# ଶିକ୍ଷକ ସହଚର

(ପ୍ରାକ୍-ପ୍ରାଥମିକ ଏବଂ ପ୍ରାଥମିକ ଶିକ୍ଷକ ନିମନ୍ତେ)



ପ୍ରସ୍ତୁତି :
ଅନୀଲ ପ୍ରଧାନ
ପ୍ରଫୁଲ୍ଲ ବେହେରା




ଶିକ୍ଷା ସନ୍ଧାନ
ଭୁବନେଶ୍ୱର

# ଶିକ୍ଷକ ସହଚର

(ପ୍ରାକ୍-ପ୍ରାଥମିକ ଏବଂ ପ୍ରାଥମିକ ଶିକ୍ଷକ ନିମନ୍ତେ)

ପ୍ରସ୍ତୁତି :
ଅନୀଲ ପ୍ରଧାନ
ପ୍ରଫୁଲ୍ଲ ବେହେରା




ଶିକ୍ଷା ସନ୍ଧାନ
ଭୁବନେଶ୍ୱର

## ଶିକ୍ଷକ ସହଚର

(ପ୍ରାକ-ପ୍ରାଥମିକ ଏବଂ ପ୍ରାଥମିକ ଶିକ୍ଷକଙ୍କ ନିମନ୍ତେ)

*ପ୍ରସ୍ତୁତି :*

ଅନୀଲ ପ୍ରଧାନ,

ପ୍ରଫୁଲ୍ଲ ବେହେରା

*ପ୍ରକାଶକ :*

ଶିକ୍ଷାସନ୍ଧାନ, ଏ-୧୨, ହାଉସିଂ ବୋର୍ଡ଼ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

*ପ୍ରକାଶନ କାଳ :* ଅପ୍ରେଲ, ୨୦୦୨

ମୂଲ୍ୟ: ୫୦ ଟଙ୍କା

---

## Sikshaka Sahachar

( A guide book for Pre-school and Primary School Teachers)

***Prepared By :***

Anil Pradhan &

Prafulla Behera

***Published by :***

**Sikshasandhan**

A-12 (HIG), H.B.Colony

Baramunda

Bhubaneswar

Phone: 0674 556109

Fax: 0674 550656

*Publication Period* : **April, 2002.**

Price: Rs. 50/

# ଶିକ୍ଷକ ସହଚର

ପ୍ରାକ୍-ପ୍ରାଥମିକ ଏବଂ ପ୍ରାଥମିକ ଶିକ୍ଷକଙ୍କ ପାଇଁ ଶିକ୍ଷକ ସହଚର ବହିଟି ଅତ୍ୟନ୍ତ ଉପାଦେୟ । ଛୋଟ ପିଲାଙ୍କ ବିଷୟରେ ଶିକ୍ଷକମାନେ ଯାହା ଜାଣିବା ନିତାନ୍ତ ଆବଶ୍ୟକ ସେ ବିଷୟରେ ବିଶଦ ବିବରଣୀ ଏଠାରେ ଆଲୋଚିତ ହୋଇଛି ।

ବାଲବାଡ଼ି ଶିକ୍ଷା ପାଇଁ ଓଡ଼ିଶାର ପୁରପଲ୍ଲୀରେ ବ୍ୟବସ୍ଥା ହୋଇଛି । କିନ୍ତୁ ସେସବୁ ପିଲାଙ୍କର ମନବୈଜ୍ଞାନିକ ପ୍ରଣାଳୀରେ ପରିଚାଳିତ ହୋଇ ପାରୁନାହିଁ । ତାହାର କାରଣ ଶିକ୍ଷିକ/ଶିକ୍ଷିକା ମାନେ ଉପଯୁକ୍ତ ଭାବରେ ତାଲିମ ପାଇପାରୁ ନାହାଁନ୍ତି । ମହିଳାମାନେ ପିଲାଙ୍କୁ ସ୍ୱାଭାବିକ ଭାବରେ ଭଲ ପାଆନ୍ତି ବୋଲି ସେମାନଙ୍କ ଦାୟିତ୍ୱରେ ପିଲାଙ୍କୁ ପୃଥିବୀସାରା ଦିଆଯାଏ କିନ୍ତୁ ଖାଲି ଭଲ ପାଇବା ଯଥେଷ୍ଟ ନୁହେଁ । ପିଲାଙ୍କର ମନ ବିଜ୍ଞାନ ବିଷୟରେ ବିଶେଷ ଜ୍ଞାନ ସେମାନଙ୍କର ରହିବା ଉଚିତ । ଏହି ବହିଟି ମାଧ୍ୟମରେ ଶିକ୍ଷିକା ଓ ମା'ମାନଙ୍କ ଭିତରେ ଉପଯୁକ୍ତ ଜ୍ଞାନ ସୃଷ୍ଟି କରିବା ଏହି ବହିଟିର ଉଦ୍ଦେଶ୍ୟ । ଏହା ବହୁ ପରିମାଣରେ ସମୃଦ୍ଧ ହୋଇଛି ବୋଲି ମୋର ମତ ।

ଗ୍ରାମାଞ୍ଚଳରେ ବାଲବାଡ଼ିର ଆବଶ୍ୟକତା ବହୁତ ବେଶି କାରଣ ପ୍ରାଥମିକ ସ୍କୁଲରେ ଯୋଗ ଦେବା ବେଳକୁ ପିଲାଠାରେ ନାନା ପ୍ରକାରର ଅଭ୍ୟାସ ହୋଇଯାଇଥାଏ । ତେଣୁ ଛଅ ବର୍ଷରେ ସ୍କୁଲକୁ ଆସିଲାପରେ ସେମାନେ ସ୍କୁଲ ପ୍ରଣାଳୀ ସହିତ ନିଜକୁ ପ୍ରତିଯୋଗିତ କରିପାରନ୍ତି ନାହିଁ । ଫଳରେ ଦ୍ୱିତୀୟ ତୃତୀୟ ଶ୍ରେଣୀ ବେଳକୁ ବହୁ ଛାତ୍ର ସ୍କୁଲ ଛାଡ଼ି ଦିଅନ୍ତି । ତେଣୁ ଗ୍ରାମାଞ୍ଚଳରେ ବାଲବାଡ଼ିର ଆବଶ୍ୟକତା ବେଶି । ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପୂର୍ବରୁ ଏହି ଶିକ୍ଷକ ସହଚର ବହିଟି ଏ ଦିଗରେ ନିଶ୍ଚିତ ଭାବରେ ଉପାଦେୟ ହେବ । ଭାଷା ଶିକ୍ଷା ବିଷୟରେ ପ୍ରଥମେ ମାତୃଭାଷା ପ୍ରତି ଯୋର୍ ଦିଆଯିବା ଆନନ୍ଦର ବିଷୟ - ପ୍ରଥମେ ମାତୃଭାଷା ଶିଖିଲେ ଦଶବର୍ଷ ବେଳକୁ ଅନ୍ୟ ଭାଷା ସହଜରେ ଶିଖିହେବ ।

ଖେଳ ମାଧମ ଶିକ୍ଷା ଉପରେ ବିଶେଷ ଭାବରେ ଉଲ୍ଲେଖ କରାହୋଇଛି । ଅଳ୍ପ ବୟସର ପିଲାଏ ଖେଳିବାକୁ ଭଲ ପାଆନ୍ତି । ଖେଳ ମାଧମରେ ହିଁ ବହୁତ କଥା ଶିଖାଯାଇପାରିବ । ସେ ବିଷୟରେ ବିଶେଷ ଭାବରେ ଆଲୋଚନା ହୋଇଥିବା ନିଶ୍ଚିତ ଭାବରେ ଗୋଟିଏ ପ୍ରଶଂସନୀୟ ଉଦ୍ୟମ । ପୃଥିବୀର ଉନ୍ନତ ଦେଶମାନଙ୍କରେ ଖେଳ ମାଧମ ସ୍କୁଲ ହିଁ ପ୍ରଚଳିତ । ଆମ ଦେଶରେ ପ୍ରଚଳିତ ପାଠପଢ଼ା ସ୍କୁଲ ପିଲାଙ୍କର ମାନସିକ ବିକାଶ ଦିଗରେ କ୍ଷତିକାରକ । ଏହାଦ୍ୱାରା ସେମାନଙ୍କର ଜ୍ଞାନଆହରଣ ପ୍ରକ୍ରିୟା ବାଧାପ୍ରାପ୍ତ ହୁଏ ।

ମୋଟାମୋଟି ଭାବରେ ଏହାଗୋଟିଏ ଉତ୍କୃଷ୍ଟ ଧରଣର ଶିକ୍ଷକ ସହଚର ବହି । ଲେଖକ ମାନଙ୍କର ଉଦ୍ୟମ ପ୍ରଶଂସନୀୟ ।

**ଡକ୍ଟର ରାଧାନାଥ ରଥ**
ଅବସରପ୍ରାପ୍ତ ପ୍ରଫେସର, ମନସ୍ତତ୍ୱ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

୮. ୫. ୨୦୦୨

# କୃତଜ୍ଞତା

ଏହି ପୁସ୍ତକ ପ୍ରକାଶନ ଏବଂ ତାଲିମ ଆୟୋଜନ କରିବା ପାଇଁ ସି.ଆର୍.ଏସ୍, କୋଲକତା ଏବଂ ଅରୂପ ଚକ୍ରବର୍ତ୍ତୀ, ସରିତା ବଡ଼ପଣ୍ଡା ସାହାଯ୍ୟ କରିଥିବାରୁ ତାଙ୍କୁ ଆମେ କୃତଜ୍ଞତା ଜଣାଉଛୁ । ତାଲିମରେ ଯେଉଁମାନେ ଯୋଗ ଦେଇଥିଲେ, ତାଲିମ କାର୍ଯ୍ୟକ୍ରମ ଯେଉଁମାନେ ପରିଚାଳନା କରିଥିଲେ ସେମାନଙ୍କୁ ସାଧୁବାଦ ଜଣାଉଛୁ । ତାଲିମ କାର୍ଯ୍ୟକ୍ରମଗୁଡ଼ିକୁ ଆମେ ଅଗ୍ରଗାମୀର କୃଷି ବିକାଶ କେନ୍ଦ୍ରରେ ଆୟୋଜନ କରିଥିଲୁ । ସେଥିପାଇଁ ଆମକୁ ଅଗ୍ରଗାମୀର ନିର୍ଦ୍ଦେଶକ ଶ୍ରୀ ଅଚ୍ୟୁତ ଦାସ ସହଯୋଗ କରିଥିବାରୁ ଆମେ ତାଙ୍କ ସହଯୋଗ ଭୁଲିପାରିବୁ ନାହିଁ । ଏହି ପୁସ୍ତକ ପାଇଁ ସମ୍ମାନୀୟ ପ୍ରଫେସର ରାଧାନାଥ ରଥ ପଦେ ଲେଖିଥିବାରୁ ଆମେ ତାଙ୍କ ନିକଟରେ ଋଣୀ ।

ପୁସ୍ତକଟି ପ୍ରସ୍ତୁତ କରିବା ପାଇଁ ଆମେ ଆମ୍‌ର ସମ୍ମାନୀୟ ଚିତ୍ତଭାଇ, ଶିକ୍ଷାସନ୍ଧାନର ସଭାପତି ଯତୀନ୍ଦ୍ର କୁମାର ନାୟକ, ଶ୍ରୀଯୁକ୍ତ ଅରବିନ୍ଦ ବେହେରା, ଶ୍ରୀମତୀ ବିଦ୍ୟା ଦାସ ଉତ୍ସାହିତ କରିଥିବାରୁ ଆମେ ସେମାନଙ୍କ ନିକଟରେ କୃତଜ୍ଞ ।

ଅନୀଲ ପ୍ରଧାନ

# ସୂଚୀପତ୍ର

# ପୁସ୍ତିକା ସମ୍ବନ୍ଧରେ ପଦେ

ପ୍ରାକ -ପ୍ରାଥମିକ ଶିକ୍ଷାର ଶିକ୍ଷକ/ଗୁରୁଭାଇ ମାନଙ୍କ ପାଇଁ ତାଲିମ ସହାୟକ ପୁସ୍ତିକା ପ୍ରସ୍ତୁତ କଲାବେଳେ ଆମ ମନରେ କେତେକ ପ୍ରଶ୍ନ ଉଠିଥିଲା । କେଉଁ କେଉଁ ବିଷୟ ଗୁଡ଼ିକ ରଖିଲେ-ଶିକ୍ଷକ/ଗୁରୁମାନେ ଛୋଟ ଛୋଟ କୋମଳମତି ପିଲାମାନଙ୍କୁ ସେମାନଙ୍କ ମାନସିକ, ଆବେଗିକ, ସାମାଜିକ ଓ ଶାରୀରିକ ବିକାଶ କରାଇ ପାରିବେ ? ସାଧାରଣତଃ ୩ - ୬ ବର୍ଷ ପିଲାମାନଙ୍କ ପାଇଁ ବାଲବାଡ଼ି/ପ୍ରାକ-ପ୍ରାଥମିକ ଶିକ୍ଷା କେନ୍ଦ୍ର ଉଦ୍ଦିଷ୍ଟ । ବିଭିନ୍ନ ଗବେଷଣାରୁ ଜଣାପଡ଼ିଛି ଯେ ଏହି ସମୟ ମଧ୍ୟରେ ପିଲାମାନଙ୍କର ଶାରୀରିକ, ମାନସିକ, ଆବେଗିକ ବିକାଶ ହୋଇଥାଏ । ସେ ସମୟରେ ପିଲାଟି ତାର ସମାଜ/ଗୋଷ୍ଠୀରୁ, ପିତାମାତାଙ୍କଠାରୁ, ଏବଂ ଶିକ୍ଷକମାନଙ୍କ ଠାରୁ ଉପଯୁକ୍ତ ପରିବେଶଟିଏ ଦରକାର କରିଥାଏ । ଉପଯୁକ୍ତ ପରିବେଶ ପାଇଲେ ତାର ବ୍ୟକ୍ତିତ୍ୱର ବିକାଶ ଠିକ୍ ଭାବରେ ଘଟିଥାଏ । ଏଭଳି ପରିବେଶ ସୃଷ୍ଟିକରିବା ପାଇଁ ସବୁପିତାମାତା ମାନଙ୍କୁ ତାଲିମ ଦିଆଯାଇ ପାରିବ ନାହିଁ । କିନ୍ତୁ ଯେଉଁମାନେ ବାଲବାଡ଼ି କେନ୍ଦ୍ର ମାନଙ୍କରେ ପିଲାମାନଙ୍କୁ ସହାୟତା କରୁଛନ୍ତି, ସେମାନଙ୍କୁ ଏକ ବିସ୍ତୃତ ତାଲିକା ଦିଆଯାଇପାରିବ, ଯାହା ସେମାନେ ପରବର୍ତ୍ତି ସମୟରେ ପିଲାର ପିତାମାତା, ଗୋଷ୍ଠୀଙ୍କୁ ପ୍ରଭାବିତ କରି ପାରିବେ ଏବଂ ଶିଶୁମାନଙ୍କର ବିକାଶ ଠିକ୍ ଭାବରେ କରାଇପାରିବେ । ଶିଶୁମାନେ ଭବିଷ୍ୟତର ନାଗରିକ । ସେମାନଙ୍କର ବିକାଶ ଠିକ୍ ଭାବରେ ହୋଇପାରିଲେ ଆମର ଭବିଷ୍ୟତ ସଂସାର ଠିକ୍ ବାଟରେ ଆଗେଇବ । ଆମେ ତାଲିମର ବିଷୟବସ୍ତୁରେ ମୋଟାମୋଟି ଶିକ୍ଷକମାନଙ୍କର ଭୂମିକା, ଗୋଷ୍ଠୀ ତଥା ପିତାମାତାଙ୍କର ଭୂମିକା ଓ ସହଯୋଗ, ପିଲାମାନଙ୍କର ଆଚରଣ ଏବଂ ବାଲବାଡ଼ି କେନ୍ଦ୍ରରେ କାର୍ଯ୍ୟକ୍ରମ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ଜାରି ରଖିଛୁ । ତାଲିମ ମଝିରେ ଆମର ତାଲିମର ଉପାଦେୟତା ତଥା ପ୍ରତକ୍ଷ୍ୟ ଭାବରେ ପରିଦର୍ଶନ କରି, ତାଲିମର ବିଷୟବସ୍ତୁ, ପଦ୍ଧତି ଉପରେ ତର୍ଜମା କରିଛୁ । ଏବଂ ଏହି ପୁସ୍ତକରେ ଶିକ୍ଷକମାନଙ୍କର କେତୋଟି ଜାଣିବା କଥା ଆମେ ଉପସ୍ଥାପନା କରିଛୁ । ଆଶା କରୁଛୁ, ପୁସ୍ତିକାଟି ଶିକ୍ଷକମାନଙ୍କୁ ଉପାଦେୟ ହେବ ।

ଅନୀଲ ପ୍ରଧାନ

ପ୍ରଫୁଲ୍ଲ ବେହେରା

# ବାଲବାଡ଼ି ଶିକ୍ଷା

'ବାଲବାଡ଼ି' 'ନର୍ସରୀ' ଆଦି ଶବ୍ଦଗୁଡ଼ିକ ଆଜିକାଲି ବହୁଳ ଭାବରେ ଶୁଣିବାକୁ ମିଳୁଛି । ଏ ସବୁର ଅର୍ଥ ହୋଇପାରେ 'ଶିଶୁପାଳନ କେନ୍ଦ୍ର' ବା 'ଚାରାବଗିଚା' କେନ୍ଦ୍ର । ଚାରାରୁ ଗଛ ହୋଇଥାଏ । ଚାରାକୁ ଯେତେ ପରିମାଣର ଯତ୍ନ ସହକାରେ ରକ୍ଷଣାବେକ୍ଷଣ କରାଯିବ, ତାହା ଦିନକୁ ଦିନ ସୁନ୍ଦର ଭାବରେ ବଢ଼ିବାକୁ ଲାଗିବ ଓ ଶେଷରେ ଗଛରେ ପରିଣତ ହେବ - ଠିକ୍ ସେହିପରି 'ଶିଶୁ'କୁ ଗୋଟିଏ 'ଚାରା' ସହିତ ତୁଳନା କରାଯାଇପାରେ । ଯଦି 'ଶିଶୁ'ଟିର ଉପଯୁକ୍ତ ଯତ୍ନ ନିଆଯିବ, ତା'ର କ୍ରମବୃଦ୍ଧି ହେବା ସହିତ, ବୌଦ୍ଧିକ ବିକାଶ ମଧ୍ୟ ଘଟିବ । ତିନିବର୍ଷରୁ ଛଅବର୍ଷ ବୟସର ପିଲାମାନେ ସାଧାରଣତଃ 'ବାଲବାଡ଼ି' ଶିକ୍ଷା କେନ୍ଦ୍ରକୁ ଆସିଥାଆନ୍ତି । ଏହି ବୟସର ପିଲାମାନଙ୍କର ଶାରୀରିକ ବିକାଶ ଘଟିବାକୁ ଲାଗିଥାଏ । ସେମାନେ କଥା କହି ଥାଆନ୍ତି, ଗୋଡ଼ରେ ଚଲାବୁଲା କରୁଥାଆନ୍ତି ଓ ଅନ୍ୟ ପିଲା, ବ୍ୟକ୍ତି କ'ଣ କରୁଛନ୍ତି, କହୁଛନ୍ତି, ନିରୀକ୍ଷଣ କରିବାକୁ ଆରମ୍ଭ କରନ୍ତି । ହସ, କାନ୍ଦ, ରାଗ, ମାନ, ଅଭିମାନ, ଅଝଟ, ଜିଦ୍ ଆଦି କରିବାକୁ ପଛାନ୍ତି ନାହିଁ ।

ଏଣୁ, ଏହି କଅଁଳ ବୟସର ପିଲାମାନଙ୍କ ପ୍ରତି ଘରେ, ପଡ଼ିଶାରେ, ପରିବେଶରେ ଓ ବାଲବାଡ଼ି କେନ୍ଦ୍ରରେ ଯଦି ସ୍ୱତନ୍ତ୍ର ଭାବରେ ସତର୍କତାର ସହିତ ନଜର ନ ରଖାଯାଏ, ଅଧିକାଂଶ ପିଲା ଠିକ୍ ବାଟରେ ନଯାଇ ଅନ୍ୟବାଟରେ ଯିବେ । ଯେପରି ଚାରାଟି ଟିକିଏ ବଢ଼ିଗଲା ପରେ, ଛୋଟ ଗଛଟିରୁ କଅଁଳ ଡଙ୍କଟିଏ ବାହାରେ, ଡଙ୍କଟିକୁ ଯେଉଁ ଦିଗକୁ ବଟେଇବ ସେ ସେହିଦିଗକୁ ବଢ଼ିବାକୁ ଲାଗିବ, ଠିକ୍ ସେହିପରି ମାଟି ପିତୁଳାକୁ ଯେଉଁପରି ଗଢ଼ିବାକୁ ଚାହିଁବ, ତଦନୁରୂପ ଗଢ଼ିହେବ ।

ବାଲବାଡ଼ି ଶିକ୍ଷାକେନ୍ଦ୍ରକୁ ଛୋଟ ପିଲାଏ ଆସିଥାଆନ୍ତି - ଯାହାଙ୍କ ମୁହଁରେ ହସ, ପାଟିରେ ମିଠା କଥା, ଚାହାଣୀରେ ଆହତ କପୋତପକ୍ଷୀର ଚାହାଣୀ - ସେମାନେ କ'ଣ ପଢ଼ିବେ ? ଜାଣିବେ, ଶିଖିବେ ? ସେମାନେ ସେହି ବୟସରେ ମାଆ'ର କୋଳରେ ରହିବାକୁ ପସନ୍ଦ କରିଥାଆନ୍ତି, କିନ୍ତୁ ମାଆ'ର କୋଳରୁ ବାଲବାଡ଼ିର କୋଳକୁ ଅଣାଯାଇଥାଏ - ମାଆଠୁ ପିଲା କ'ଣ ପାଇଥାଏ ? ସ୍ନେହ, ଶ୍ରଦ୍ଧା, ତାର ଜିଦ୍ ଅଝଟକୁ ମାଆ ତୁଲେଇଥାଏ, ଠିକ୍ ଅନୁରୂପ ଯଦି ବାଲବାଡ଼ି ଶିକ୍ଷାକେନ୍ଦ୍ରରେ ସେ ସ୍ନେହ ଶ୍ରଦ୍ଧା ପାଇବ - ଘରକୁ କିଛି ସମୟ ଭୁଲିଯିବ - ଆପେ ଆପେ ଏଠିକୁ ଚାଲି ଆସିବ - ଶିକ୍ଷକ, ଶିକ୍ଷିକାଙ୍କର ସ୍ନେହ, ସରାଗ ପାଇ ବାଲବାଡ଼ି କେନ୍ଦ୍ର ହେଉଛି ପିଲାର ମାଆ ପରି ଏକ ଅନୁଭବ ।

ତିନିରୁ ଛଅ ବର୍ଷ ବୟସର ପିଲାମାନେ - ଗୀତ, ଗପ, ଖେଳ ପ୍ରିୟ । ତାଙ୍କୁ ଘରେ ତାଙ୍କର ଅନେକ ଜିଦ୍‌ରୁ ଭୁଲେଇବା ପାଇଁ - ନାନାବାୟା ଗୀତ, ଜହ୍ନମାମୁଁ ଗୀତ, ଟୁଆଁଟୁଇଁ ଗପ, ବାଘର ପିଠାଖିଆ

ଗପ, ମାଙ୍କଡ଼ର ବିଚାର ଆଦି ଗପ କୁହାଯାଇଥାଏ । ଗୀତ ବୋଲା ଯାଇଥାଏ - ଅବିକଳ ଭାବରେ ବାଲବାଡ଼ି କେନ୍ଦ୍ରରେ ଗୀତ, ନାଚ, ଖେଳ ବିଭିନ୍ନ ପ୍ରକାରର ହେବା ଉଚିତ । ଏହା ହେଉଛି ଶିଶୁର ମାନସିକ ବିକାଶର ସମୟ । ଏଣୁ, ଯେତେ ପ୍ରକାରର କୌତୁହଳପୂର୍ଣ୍ଣ ଗୀତ, ନାଚ, ଗପ , ପହେଳି ପିଲାମାନଙ୍କୁ କୁହାଯିବ, ସେମାନେ ସେତିକି ବୁଦ୍ଧିମାନ ହେବେ ।

ଏ ପ୍ରକାର ଶିକ୍ଷା କାର୍ଯ୍ୟକ୍ରମରେ ପାଠପଢ଼ାର ଭୂମିକା ଗୌଣ । ପିଲା କିଛି ଅକ୍ଷର ଶିଖିବ, ଖଣ୍ଡିଆ ଖଣ୍ଡିଆ ମିଠାଳିଆ ଦରୋଟି ଭାଷାରେ ଉଚ୍ଚାରଣ କରିବ - ସେହିପରି ସଂଖ୍ୟା କେତୋଟି - ବିଭିନ୍ନ ଗୀତ, ଖେଳ, ଉଦାହରଣ ମାଧ୍ୟମରେ ତାଙ୍କୁ ତାହା ମଧ୍ୟ ଶିଖାଯାଇପାରିବ । ବାଲବାଡ଼ି ଶିକ୍ଷାକେନ୍ଦ୍ର ହେଉଛି ପିଲାର ଘର ପରି । ସେ ଯଦି ସେହି କେନ୍ଦ୍ରରେ ଅଲୋଡ଼ା ବୋଲି ଅନୁଭବ କରିବ - ଆଉ ଯେତେ ମାରଧର, ଟଣାଟଣି କଲେ, ଆସିବ ନାହିଁ । ସେ ଘରେ, ସାହିରେ, ପଡ଼ିଶା ପିଲାଙ୍କ ସହିତ ମିଶି ଖେଳକୁଦରେ ସମୟ ବିତେଇ ଥାଏ, ଏଠି ତାକୁ ସେଇୟା କରିବାକୁ ପଡ଼ିବ । ଅନ୍ୟ ପିଲାଙ୍କ ସହିତ ଖେଳ, ନାଚ, କୁଦ କରିଆରେ ପରିଚିତ ହେବ । ସେମାନଙ୍କ ସାଙ୍ଗରେ ମିଶି ମିଳିମିଶି ଗୀତ ବୋଲିବ, ଖେଳ ଖେଳିବ, ଏହା ଏକ ସହଜ ପ୍ରକ୍ରିୟା । ସହଜାତ ପ୍ରକ୍ରିୟା ହେଲେ ମଧ୍ୟ - ବାସ୍ତବରେ ଏସବୁକୁ କାର୍ଯ୍ୟକାରୀ କରିବା ସେତେ ସହଜସାଧ ନୁହଁ । ଏଇଥିପାଇଁ ଶିକ୍ଷକଙ୍କୁ ଅଜସ୍ର ଚେଷ୍ଟା, ଅସୀମ ଧୈର୍ଯ୍ୟ ଅବଲମ୍ବନ କରିବାକୁ ହେବ, ଛୋଟ ପିଲାଙ୍କୁ ବିଦ୍ୟାଳୟ ପ୍ରତି ଆକର୍ଷିତ କରିବାର ଏକ ମନୋରମ ବାତାବରଣ ତାଙ୍କୁ ସୃଷ୍ଟି କରିବାକୁ ପଡ଼ିବ । ସେ ପିଲାଠୁ ଦୂରେଇ ଯିବ ନାହିଁ - ଦୂରତା ରଖିବା ପାଇଁ ଚେଷ୍ଟା କରିବ ନାହିଁ - କାରଣ ଏ ବୟସର ପିଲାଏ ସାହାରା ଖୋଜିଥାଆନ୍ତି, ତାକୁ ଶିକ୍ଷକ ମହାଶୟ ସାହାରା ଯୋଗାଇ ଦେବେ । ବିଦ୍ୟାଳୟ ଶୁଷ୍କ ଅନୁଭବ ହେବନାହିଁ । ପିଲାଙ୍କ ଉପରେ ଶିକ୍ଷକ ବୋଝ ହେବେ ନାହିଁ । ତାଙ୍କୁ ଯେତିକି 'ଆପଣାର', 'ନିଜର' କରିପାରିବେ, ସେମାନେ ସେତିକି ପରିମାଣରେ ଶିକ୍ଷକ, କେନ୍ଦ୍ରକୁ ନିଜର ମନେ କରିବେ ।

ବାଲବାଡ଼ି କେନ୍ଦ୍ର ହେଉଛି ପିଲାର ଏନ୍ତୁଡ଼ିଶାଳ ପରି । ଏଠି ଯତ୍ନ, ସାବଧାନତା, ପରିଶ୍ରମର ଆବଶ୍ୟକତା ରହିଛି । ଏଇଠି ପିଲା ବାହାରକୁ ଚିହ୍ନି ଜାଣିବାପାଇଁ, ବୁଝିବାପାଇଁ - ରାହା ପାଇ ଆଖି ମେଲି ଶିଖିବ ।

ଏଣୁ ବାଲବାଡ଼ି କେନ୍ଦ୍ରର ମହତ୍ତ୍ୱ ଶିକ୍ଷାୟତନର 'ମାନ'ଠାରୁ ଯଥେଷ୍ଟ ଅଧିକ । ଏହା ହେଉଛି ଭବିଷ୍ୟତମାନଙ୍କର ''ଚରା ଭୂଇଁ'' । ଭବିଷ୍ୟତମାନେ କ'ଣ ହେବ ? ଏହି ଚରାଭୂଇଁ ତା'ର ଏକ ସୂଚନା ଦେବ । ଏଣୁ ବାଲବାଡ଼ି ଶିକ୍ଷାକେନ୍ଦ୍ର ପ୍ରତି ଯଥେଷ୍ଟ ଗୁରୁତ୍ୱ ଦେଇ ଏହାର ପରିଚାଳନା କରିବାକୁ ହେବ । ଏହି ପରିଚାଳନାରେ ନିଃସ୍ୱାର୍ଥପରତା, ସେବା ମନୋଭାବ ଓ ତ୍ୟାଗର ଆବଶ୍ୟକତା ରହିଛି ।

❑❑❑

# ବାଲବାଡ଼ି କେନ୍ଦ୍ରରେ ସହାୟକଙ୍କ ଭୂମିକା

ବାଲବାଡ଼ି କେନ୍ଦ୍ରରେ ଶିକ୍ଷକଙ୍କୁ ଆମେ ଏଠାରେ ସହାୟକ ବୋଲି ଉପସ୍ଥାପନ କରିଛୁ। ଆଦିବାସୀ ଅଞ୍ଚଳର ପିଲାମାନେ ସାଧାରଣତଃ ଗୁରୁଭାଇ ବୋଲି ସମ୍ବୋଧନ କରିଥାନ୍ତି। ଏହାଦ୍ୱାରା ସେମାନେ ସହାୟକଙ୍କର ନିକଟତର ହୋଇଥାନ୍ତି।

ଆଦିବାସୀ ଅଞ୍ଚଳରେ ପିଲାମାନଙ୍କର ସାଧାରଣତଃ ଶିକ୍ଷାକେନ୍ଦ୍ର ପ୍ରତି ଭୟ ଥାଏ। ପାଠ ପଢ଼ିବା କାମ ସମାଜ ବ୍ୟବସ୍ଥା ଅନୁସାରେ ଉଚ୍ଚ ଜାତିର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ବୋଲି ଅନେକ ଧରି ନେଇଥାଆନ୍ତି। ଏଣୁ ଶିକ୍ଷାକେନ୍ଦ୍ରକୁ ପିଲା ଗଲାବେଳେ ତା'ର ସ୍କୁଲ ସଭାଗୃହକୁ ଭୟ, ଶିକ୍ଷକଙ୍କୁ ଭୟ ମନରେ ରହିଥାଏ। ବିଶେଷ କରି ଆଦିବାସୀ ସମାଜରେ ବାପା, ମା'ମାନେ ପିଲାମାନଙ୍କୁ ମାଡ଼ ଦିଅନ୍ତି ନାହିଁ। ଅନୁଧ୍ୟାନରୁ ଜଣାଯାଏ ଯେ, ଅଧିକାଂଶ ପିଲା ମାଡ଼ ଭୟରେ ପାଠପଢ଼ା ଅଧାରୁ ଛାଡ଼ି ଦେଇଥାନ୍ତି। ଏଣୁ ବାଲବାଡ଼ି କେନ୍ଦ୍ର ପିଲାମାନେ ଘରୁ ସ୍କୁଲକୁ ଆସିବା ପ୍ରକ୍ରିୟାକୁ ମଜଭୁତ କରାଇଥାଏ। ପିଲାମାନେ ବାଲବାଡ଼ିରେ ହସି, ଖେଳି, ଗୀତ ଗାଇ ଶିକ୍ଷକ ତଥା ସ୍କୁଲ ପ୍ରତି ଭୟ ଦୂର କରିବେ, ଏବଂ ପରବର୍ତ୍ତୀ ସମୟରେ ସ୍କୁଲକୁ ଆସିବା ପାଇଁ ଏହା ବହୁତ ସାହାଯ୍ୟ କରିବ। ୩ ବର୍ଷରୁ ୫ ବର୍ଷ ପିଲାମାନେ ବଡ଼ଲୋକଙ୍କ ଠାରୁ ସ୍ନେହ, ଶ୍ରଦ୍ଧା ପାଇଲେ ସେମାନଙ୍କର ପୂର୍ଣ୍ଣାଙ୍ଗ ବିକାଶ ହୋଇପାରିବ। ଏହି ପୂର୍ଣ୍ଣାଙ୍ଗ ବିକାଶ ପାଇଁ ଯେ କେବଳ ସହାୟକମାନେ ସହାୟତା ବାଲବାଡ଼ି କେନ୍ଦ୍ରରେ କରିବେ, ତାହାନୁହେଁ, ଘର ପିତାମାତାଙ୍କର ମଧ୍ୟ ଗୁରୁଦାୟିତ୍ୱ ରହିଛି। ପିତାମାତାମାନଙ୍କୁ ଏ ବିଷୟରେ ବୁଝାଇବ କିଏ ? ନିଶ୍ଚିତ ଭାବରେ ବାଲବାଡ଼ି କେନ୍ଦ୍ରର ସହାୟକ। ଏଣୁ ବାଲବାଡ଼ି କେନ୍ଦ୍ରର ସହାୟକଙ୍କର ଦାୟିତ୍ୱ ବହୁତ ବେଶି। ଛୋଟ ଛୋଟ କୋମଳମତି ପିଲାମାନଙ୍କୁ ଦେଖିବା, ଏବଂ ପିତାମାତାମାନଙ୍କୁ ଶିଶୁମାନଙ୍କର ପୂର୍ଣ୍ଣାଙ୍ଗ ବିକାଶ ବୁଝାଇବା ନିହାତି ଗୋଟିଏ ବଡ଼ କାର୍ଯ୍ୟ। କିନ୍ତୁ ବାଲବାଡ଼ି କେନ୍ଦ୍ରର ସହାୟକମାନଙ୍କୁ ଏ ଗୁରୁ ଦାୟିତ୍ୱ ନିଭେଇବାକୁ ପଡ଼ିବ।

**ବାଲବାଡ଼ି କେନ୍ଦ୍ର :** ବାଲବାଡ଼ି କେନ୍ଦ୍ରକୁ ପରିଷ୍କାର ରଖିବା, ପିଲାମାନଙ୍କ ପାଇଁ ବିଭିନ୍ନ ଖେଳ, ତଥା ଅନ୍ୟାନ୍ୟ ଉପକରଣ ରଖିବା, ପିଲାମାନଙ୍କ ସଙ୍ଗେ କଥାବାର୍ତ୍ତା କରିବା, ଏବଂ ବାଲବାଡ଼ି କେନ୍ଦ୍ରର ଅନ୍ୟାନ୍ୟ କାର୍ଯ୍ୟକ୍ରମ ପରିଚାଳନା ଆଦି କାର୍ଯ୍ୟ ସହାୟକଙ୍କୁ କରିବାକୁ ପଡ଼ିବ। ଏଥିପାଇଁ ସହାୟକଙ୍କୁ ଶିଶୁମାନଙ୍କର ପୂର୍ଣ୍ଣାଙ୍ଗ ବିକାଶ - ମାନସିକ, ଆବେଗିକ, ଭାଷାଗତ, ଶାରୀରିକ ଓ ସୌନ୍ଦର୍ଯ୍ୟବୋଧର ବିକାଶ ଆଦିର ବିକାଶ ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ବିଷୟରେ ବୁଝିବାକୁ ପଡ଼ିବ। ଏଥିପାଇଁ ତାଲିମଦାତା, ଯେଉଁ ସଂସ୍ଥା ଏହି କେନ୍ଦ୍ର ପରିଚାଳନା କରୁଛନ୍ତି, ଗାଁର ଶିକ୍ଷକ କିମ୍ବା ଏ ବିଷୟରେ ଜାଣିଥିବା ବ୍ୟକ୍ତିବିଶେଷ - ଅଙ୍ଗନବାଡ଼ିର ସୁପରଭାଇଜର, କର୍ମୀ, ସ୍ୱାସ୍ଥ୍ୟକର୍ମୀମାନଙ୍କର ସହାୟତା ନେଇ ପାରିବେ।

**ଗୋଷ୍ଠୀ ସହଯୋଗୀତା :** ପିତାମାତାଙ୍କ ସହଯୋଗ ବିନା ବାଲବାଡ଼ି କେନ୍ଦ୍ରର ପିଲାମାନଙ୍କର ପୂର୍ଣ୍ଣାଙ୍ଗ ବିକାଶ କରାଇବା ସମ୍ଭବ ନୁହେଁ । ବାଲବାଡ଼ି କେନ୍ଦ୍ରରେ ଯେତିକି ସମୟ ପିଲାମାନେ ରହିବେ କେବଳ ଶିକ୍ଷକ ପିଲାମାନଙ୍କର ଯତ୍ନ ନେଇପାରିବେ । ଅନ୍ୟ ସମୟରେ ପିଲାମାନଙ୍କର ଖାଦ୍ୟପେୟ, ଖେଳ, ପରିଷ୍କାର ପରିଚ୍ଛନ୍ନତା, ସ୍ୱାସ୍ଥ୍ୟ, ଆଦି ବିଷୟରେ ବାପା ମା'ମାନେ ବୁଝିବେ । ଏଣୁ ପିଲାର ଖାଦ୍ୟ ଯେମିତି ଦରକାର, ତାର ମାନସିକ, ଆବେଗିକ, ଶାରୀରିକ ବିକାଶ ପାଇଁ ଖେଳ, ଗୀତ, ନାଚ ଆଦିର ମଧ୍ୟ ସେତିକି ଦରକାର । ଗୋଟେ ପିଲାକୁ ଯେ କେବଳ ଉତ୍ତମ ଖାଦ୍ୟ, ପୋଷାକପତ୍ର, ଘର ମିଳିଗଲେ ତାର ବିକାଶ ଠିକ୍ ଭାବରେ ହୋଇଯିବ, ତାହାନୁହେଁ । ତାର ପୂର୍ଣ୍ଣାଙ୍ଗ ବିକାଶ ପାଇଁ ଖେଳ, ଗୀତ, ନାଚ, ଚିତ୍ରକଳା, ବାଜା, ଆଦିର ଆବଶ୍ୟକତା ଯଥେଷ୍ଟ ବେଶି । ପିଲାଟି ସାମାଜିକ ହୁଏ ଅନ୍ୟ ସାଥି ପିଲାମାନଙ୍କ ସହିତ ଖେଳିବା ଦ୍ୱାରା । ଖେଳ ଦ୍ୱାରା ପିଲା ଜିତେ, ହାରେ । ଏହାଦ୍ୱାରା ତାର ଧୈର୍ଯ୍ୟଶକ୍ତି ବଢ଼େ । ବଣ୍ଡା ପିଲାମାନଙ୍କର ଗୋଷ୍ଠୀ ଖେଳ ନଥିବାରୁ ବୋଧହୁଏ ସେମାନେ କ୍ଷଣକୋପି, ଟିକେ ଟିକେ କଥାରେ ସେମାନେ ଧନୁତୀର ଚାଳନା କରନ୍ତି । ସ୍ୱାସ୍ଥ୍ୟ, ପରିଷ୍କାର ପରିଚ୍ଛନ୍ନତା ମଧ୍ୟ ପିଲାର ସମାନ ଭାବରେ ଦରକାର । ଏ ବିଷୟରେ ଅନେକ ପିତାମାତା ଅଜ୍ଞ ଥାଆନ୍ତି । ଏଣୁ ପିତାମାତାଙ୍କୁ ନେଇ ପ୍ରତି ମାସରେ ସଭା କରାଇବା, ପିଲାମାନଙ୍କର ବିକାଶ ଉପରେ ଚର୍ଚ୍ଚା କରିବା, ଆଦି କଲେ ପିତାମାତାମାନେ ନିଶ୍ଚୟ ଭାବରେ ବାଲବାଡ଼ି କେନ୍ଦ୍ରରେ ବାପା, ମା'ଙ୍କର ସହଯୋଗ ବଢ଼ିବ ।

ଶିକ୍ଷକମାନେ ମନେ ରଖିବା ଉଚିତ ଯେ, ପିଲା ତା ଘରରୁ, ଏବଂ ଗାଁର ପରିବେଶରୁ ଅନେକ କିଛି ଶିଖିଥାଏ । ସେ ଶିକ୍ଷାକେନ୍ଦ୍ରକୁ ଆସିବା ପୂର୍ବରୁ ଅନେକ କିଛି ଜାଣିଥାଏ । ଏଣୁ ପିଲାମାନଙ୍କର ଅନୁଭୂତି ଓ ଅଭିଜ୍ଞତାକୁ ନେଇ ଶିକ୍ଷକମାନେ ବାଲବାଡ଼ିରେ ବିଭିନ୍ନ କାର୍ଯ୍ୟକ୍ରମ କରିବେ । ଅନେକ ଶିକ୍ଷକ ପିତାମାତା କିଛି ଜାଣି ନଥାନ୍ତି ଭାବି, ସେମାନେ ଯାହା ଭଲ ବୋଲି ଭାବନ୍ତି, ତାହା କରିଥାନ୍ତି । ଏହା ଦ୍ୱାରା ପିଲାମାନଙ୍କର ବିକାଶ ଠିକ୍ ଭାବରେ ହୁଏ ନାହିଁ । ପିଲାମାନେ କଞ୍ଚାମାଟି । ଶିକ୍ଷକମାନେ ତାକୁ ଯେମିତି ଗଢ଼ିବେ ସେମାନେ ସେମିତି ଗଢ଼ିହେବେ, ଏଭଳି ଭାବିବା ଭୁଲ । ଶିକ୍ଷକମାନେ କେବଳ ପିଲାମାନଙ୍କ ଭିତରେ ଥିବା ସମ୍ଭାବନାକୁ ପରିପ୍ରକାଶ କରିବାରେ ସାହାଯ୍ୟ କରିବେ । ଶ୍ରୀଅରବିନ୍ଦ କହିଥିଲେ ''କୌଣସି ବିଷୟ ଶିଖାଯାଇ ପାରିବ ନାହିଁ, ପିଲାର ମନଭିତରେ ଯାହାଅଛି, ସେ ତାହାହିଁ ଶିଖିବ ।''

ଖେଳ, ନାଚ, ଗୀତ, ବାଦ୍ୟ ପିଲାମାନଙ୍କର ଶରୀର ଏବଂ ମନ ଠିକ୍ ରଖିବାରେ ସାହାଯ୍ୟ କରେ । ତାର ଏହାଦ୍ୱାରା ତାର ହାତ, ଗୋଡ଼ ଚାଳନା ହୁଏ । ଅନ୍ୟ ପିଲାମାନଙ୍କ ସହିତ ଖେଳୁଥିବାରୁ ସେ ସାମାଜିକ ହୋଇଥାଏ । ଅନ୍ୟପିଲାଙ୍କୁ ସାଙ୍ଗ କରିବା, ଅନ୍ୟର ଖୁସିରେ ଏବଂ ଦୁଃଖରେ ଭାଗୀଦାର ହୋଇଥାଏ । ଖେଳରେ ସେ ହାରେ ଏବଂ ଜିତେ । ଖେଳରେ ଜିତିଲେ ସେ ଖୁସିହୁଏ, ଏବଂ ହାରିଲେ ଦୁଃଖରେ ଭାଙ୍ଗିପଡ଼େ । ଏହାଦ୍ୱାରା ତାର ମନ ସହନଶୀଳ ହୁଏ । ସେହିଭଳି ନାଚ, ଗୀତ ଏବଂ ବାଦ୍ୟ ତା ଜୀବନକୁ ସରସ ଏବଂ ସୁନ୍ଦର କରି ଗଢ଼ି ତୋଳିବାରେ ସାହାଯ୍ୟ କରେ ।

**ଚିତ୍ରାଙ୍କନ :** ପିଲା ନିଜର ଅନୁଭୂତିକୁ ପ୍ରକାଶ କରିବା ପାଇଁ ଚିତ୍ରହିଁ ଏକ ବଡ଼ ମାଧ୍ୟମ । ତା ଛଡ଼ା ପିଲା ଦେଖୁଥିବା ତା ଚାରିପାଖରେ ଜିନିଷକୁ ବର୍ଣ୍ଣନା କରି ବୁଝେଇବା ଅପେକ୍ଷା ଚିତ୍ରମାଧ୍ୟମରେ ବୁଝାଇବା ଅଧିକ ଫଳପ୍ରଦ ହୋଇଥାଏ ।

# ପରିବାରଠାରୁ ପିଲାଟିଏ କେଉଁ କେଉଁ ଜିନିଷ ଆଶାକରେ ।

୧) ସଫାସୁତୁରା ଏବଂ ନିରାପଦ ଘର ।

୨) ଶାରୀରିକ ଯତ୍ନ ।

୩) ଦରକାର ଅନୁଯାୟୀ ପୁଷ୍ଟିକର ଖାଦ୍ୟ ।

୪) ଖେଳିବା ପାଇଁ ଭଲ ଖେଳ ଉପକରଣ ।

୫) ବଡ଼ ଲୋକମାନଙ୍କଠାରୁ ସ୍ନେହପୂର୍ଣ୍ଣ କଥା, ପଢ଼ାସାଥି, ଖେଳସାଥି ଓ ଅନ୍ୟାନ୍ୟ ।

୬) ଅନ୍ୟ ପିଲାମାନଙ୍କ ସହ ଖେଳିବା ପାଇଁ ସୁଯୋଗ ।

୭) ସାକାରାତ୍ମକ ଶୁଣିବା ।

୮) ସାମାଜିକ ବ୍ୟାଧିରୁ ନିରାପତ୍ତା ।



- ✔ ପ୍ରତ୍ୟେକ ପିଲା ଅଲଗା ପ୍ରକାରର ।
- ✔ ଶିଶୁମାନଙ୍କ ପାଇଁ କେତେକ ଜିନିଷ ସେମାନେ ସମାନ ଭାବେ ଦରକାର କରନ୍ତି । ସ୍ନେହ, ସୁରକ୍ଷା, ସୁଷମ ଖାଦ୍ୟ, ବ୍ୟାୟାମ ।
- ✔ ପ୍ରତ୍ୟେକ ପିଲା ନିଜକୁ ସୁରକ୍ଷିତ ବୋଲି ଏବଂ ତାକୁ ସମସ୍ତେ ଭଲ ପାଉଛନ୍ତି ବୋଲି ଭାବିବା ଉଚିତ ।

# ଶିଶୁର ମନ

ମନୋବିଜ୍ଞାନୀମାନେ କହୁଛନ୍ତି ଯେ, ଶିଶୁର ବିକାଶ ପ୍ରକ୍ରିୟା ମା'ର ପେଟ ଭିତରୁ ଆରମ୍ଭ ହୋଇଥାଏ । ସେଥିପାଇଁ ଗର୍ଭବତୀ ସ୍ତ୍ରୀମାନଙ୍କୁ ସେମାନଙ୍କର ମନଖୁସୀ ପାଇଁ ବିଶେଷ ଧ୍ୟାନ ଦିଆଯାଇଥାଏ । ଶିଶୁଟି ଯେମିତି ମନୋଭବ, ଏବଂ ପରିବେଶ ଦେଇ ଗଢ଼ିଉଠିବ, ବଡ଼ହେଲେ ତାର ଆଚାର ବ୍ୟବହାର ସେହିଭଳି ହେବ । ଏଣୁ ସମାଜ ଗଠନରେ ମନୋବିଜ୍ଞାନର ଭୂମିକା ଯଥେଷ୍ଟ ବେଶି ।

ପିଲାର ବ୍ୟକ୍ତିତ୍ୱ, ଗୁଣ, ଚରିତ୍ରର ବିକାଶକୁ ନେଇ ଦୁଇପ୍ରକାର ମତ ରହିଛି । କେତେକ ଭାବନ୍ତି ଶିଶୁର ଗୁଣ ଓ ଚରିତ୍ର ତା' ବାପା ମା' ତଥା ବଂଶ ନେଇ ହୋଇଥାଏ । ଆଉ କେତେକ କହନ୍ତି ଶିଶୁର ଗୁଣ ଓ ଚରିତ୍ର ତା ପରିବେଶକୁ ନେଇ ହୋଇଥାଏ । ଯେଉଁମାନେ ବଂଶଗତ ବୋଲି କୁହନ୍ତି, ସେମାନେ କୁହନ୍ତି ଯେ ଯେହେତୁ ପିଲାମାନେ ଶାରୀରିକ ଗଠନ - ନାକ, କାନ, ଆଦି ବାପା, ମା'ଙ୍କ ଭଳି ହୋଇଥାଏ, ନୈତିକଗୁଣ ମଧ୍ୟ ବଂଶଗତ ହୋଇଥାଏ । ସେମାନଙ୍କର ଅନ୍ୟ ଏକ ଯୁକ୍ତ ହେଲା ଯେ ପିଲାମାନେ ସମାନ ପରିବେଶ ମଧ୍ୟରେ ବଢୁଥିଲେ ମଧ୍ୟ ତାଙ୍କ ଭିତରକୁ କେତେକ ବୁଦ୍ଧିଆ ହୋଇଥାନ୍ତି ଏବଂ ଆଉ କେତେକଙ୍କ ଠାରେ ଅଳ୍ପ ବୁଦ୍ଧି ଥାଏ । ଏଣୁ ପିଲାର ଗୁଣ ତା ବଂଶଗତ ଉପରେ ନିର୍ଭର କରେ ।

ଯେଉଁମାନେ ପରିବେଶ କଥା କୁହନ୍ତି, ସେମାନେ କୁହନ୍ତି ପିଲାର ପରିବେଶ ତା'ର ଶାରିରୀକ ଏବଂ ମନସ୍ତତ୍ତ୍ୱିକ ବିକାଶ ଉପରେ ପ୍ରଭାବ ପକାଇଥାଏ । ମଣିଷ ଯେଭଳି ପରିବେଶ ପାଇବ, ସେଭଳି ଭାବରେ ସେ ଗଢ଼ିଉଠିବ । ଏଭଳି ମତବାଦ ବିଭିନ୍ନ ଭିନ୍ନ ସମୟରେ ଆମେ ଗାଁ ଗହଳିରେ ବ୍ୟବହାର ହେଉଥିବାର ମଧ୍ୟ ଦେଖୁଥାଉ । ପିଲାଟି ସଙ୍ଗଦୋଶରୁ ଖରାପ ହୋଇଗଲା, ପିଲାର ବଂଶ ପରମ୍ପରା ସେୟା, ସେ କେମିତି ହେବ ? ଇତ୍ୟାଦି ଲୋକମୁଖରୁ ଶୁଣିବାକୁ ମିଳିଥାଏ ।

ଆଉଦଳେ ମନୋବିଜ୍ଞାନୀ କହିଲେ ଶିଶୁଟି ଉଭୟ ବଂଶଗତ ଏବଂ ପରିବେଶର ସଂଯୋଗରେ ତାର ବ୍ୟକ୍ତିତ୍ୱ ବିକାଶ ହୋଇଥାଏ । ବଂଶଗତ ଗୁଣ ପିଲାକୁ ଏକ ବିଶେଷଗୁଣ ଅଧିକାରୀ କରାଇଥାଏ, କିନ୍ତୁ ପରିବେଶ ତାକୁ ଠିକ୍ ଭାବରେ ବିକାଶ ହେବାରେ ସାହାଯ୍ୟ କରେ । ବଂଶଗତଗୁଣ ଏବଂ ପରିବେଶ ଶିଶୁର ବିକାଶରେ ପରିପୂରକ ଭାବରେ କାମ କରେ । କୌଣସି ଗୁଣର ଆଧାର କରି ପିଲାଟି ତା ପରିବେଶରୁ ହୁଏ । ମଣିଷ, ଜୀବଜନ୍ତୁ, କେହି କୌଣସି ଗୋଟିକର ଫଳ ନୁହେଁ, ମଞ୍ଜି ଗଛହେବାରେ ସାହାଯ୍ୟ କରେ କିନ୍ତୁ ଏହା କେତେ ଲାଭବାନ ହେବ ଏବଂ ଭଲ ଫଳ ଆସିବ ତାର ମାଟି, ପାଣି, ସାର ଉପରେ ନିର୍ଭର କରେ । ଯଦି ଶିଶୁର ବିକାଶ ବଂଶଗତ ହୋଇଥାନ୍ତା, ତାହା ହେଲେ କଣା, ଅନ୍ଧ ଲୋକର ଛୁଆମାନେ ମଧ୍ୟ ସେହିଭଳି ଅନ୍ଧ, କଣା ହୋଇ ଜନ୍ମ ହୋଇଥାନ୍ତେ । କେତେକ ମନୋବିଜ୍ଞାନୀ କହୁଛନ୍ତି ଯେ ପିଲାମାନେ ସାଧାରଣତଃ ଅଧାଗୁଣ ବାପା ମା'ଙ୍କର ଆଣିଥାନ୍ତି । ଚାରିଭାଗରୁ ଏକଭାଗ ଅଜା ଆଇଙ୍କର, ଆଠ ଭାଗରୁ ଏକ ଭାଗ ବଡ଼ ଗୋସେଇଁ ବାପାଙ୍କର ।

ଅଧ୍ୟୟନରୁ ଜଣାଯାଇଛି ଯେ, ଶିଶୁର ୩ ବର୍ଷରୁ ୫ ବର୍ଷ ମଧ୍ୟରେ ତାର ପୂର୍ଣ୍ଣ ବିକାଶ ଘଟିଥାଏ ।

ପୂର୍ଣ୍ଣାଙ୍ଗ ବିକାଶ ପାଇଁ ଶିଶୁର ଶାରିରୀକ, ଭାଷାଗତ, ବୌଦ୍ଧିକ, ସାମାଜିକ , ଆବେଗିକ ଏବଂ ସୌନ୍ଦର୍ଯ୍ୟବୋଧ ବିକାଶ ଦରକାର ହୁଏ ।

**(କ) ଶାରୀରିକ ବିକାଶ :** ଶାରିରୀକ ବିକାଶ କହିଲେ ପିଲାର ଶରୀରରେ ପରିବର୍ତ୍ତନ ଆସିବ । ଏଥିପାଇଁ ପିଲାର ହାତ, ଗୋଡ଼ଚାଳନା ହେବା ଦରକାର । ବୟସ ଅନୁସାରେ ତାର ଓଜନରେ ଏବଂ ଉଚ୍ଚତାରେ ମଧ ପରିବର୍ତ୍ତନ ଲକ୍ଷ କରାଯାଏ ।

**(ଖ) ଭାଷାଗତ ବିକାଶ :** ପିଲାର ଭାଷାଗତ ବିକାଶ ତାର ପରିବାରରେ ହୋଇଥାଏ । ୩ ବର୍ଷର ପିଲା ସ୍ପଷ୍ଟ ଭାବରେ କହିପାରେ । ସଠିକ ଭାବରେ, ନିର୍ଭିକ ଭାବରେ କହିପାରିବା ପାଇଁ ଶିଶୁକୁ ସବୁମତେ ସାହାଯ୍ୟ କରିବା । ସାଙ୍ଗ ସଂଯୋଗ, ପଢ଼ିବା, ଲେଖିବାର ସବୁ ପ୍ରସ୍ତୁତି ୩ ରୁ ୫ ବର୍ଷ ଭିତରେ ପିଲାର ହେବା କଥା ।

**(ଗ) ବୌଦ୍ଧିକ ବିକାଶ :** ଏହା ଏକ ମାନସିକ ପ୍ରକ୍ରିୟା ଯାହାଦ୍ୱାରା ଶିଶୁର ଜ୍ଞାନ ବିକାଶ ହୁଏ । ଏହି ପ୍ରକ୍ରିୟାରେ ଶିଶୁଟି କୌଣସି ଜିନିଷକୁ ଜାଣେ, ତାକୁ ପର୍ଯ୍ୟାଲୋଚନା କରେ ଏବଂ ଭଲ ମନ୍ଦ ବିଚାର କରିପାରେ । ୩ ବର୍ଷରୁ ୫ ବର୍ଷ ଭିତରେ ଶିଶୁର ବୈଦ୍ଧିକ ବିକାଶ ବିଶେଷ ଭାବରେ ଘଟିଥାଏ । ଗୋଟିଏ ଶିଶୁର ବୌଦ୍ଧିକ ବିକାଶ ଘଟୁଛି କି ନାହିଁ ତାହା ନିମ୍ନଲିଖିତ କାର୍ଯ୍ୟରୁ ଜାଣିପାରିବେ ।

- ✔ ମନେ ରଖିବା, କ୍ରମାନ୍ୱୟତା ଜାଣିବା ।
- ✔ ସଂଖ୍ୟା ବିଚାରରେ ଧାରଣା, ରଙ୍ଗ ବିଷୟରେ ଧାରଣା, ଆକାର ବିଷୟରେ ଧାରଣା, ଯାଗା ବିଷୟରେ ଧାରଣା, ପରିବେଶ ବିଷୟରେ ଜ୍ଞାନ ଏବଂ ସୃଜନଶୀଳତା ।

**(ଘ) ସାମାଜିକ ବିକାଶ :** ପିଲାର ସାମାଜିକ ବିକାଶ ଘଟିଲେ ପିଲା ବ୍ୟକ୍ତି କେନ୍ଦ୍ରିକ ହୋଇଯାଏ, ଅନ୍ୟ କାହାସଙ୍ଗେ ମିଶିପାରେ ନାହିଁ କିମ୍ବା ଭିନ୍ନ ଏକ ପରିବେଶରେ ଖାପ ଖୁଆଇ ପାରେ ନାହିଁ । ପରବର୍ତ୍ତୀ ସମୟରେ ଶିଶୁଟି ଜଣେ ଅସାମାଜିକ ପ୍ରାଣି ହିସାବରେ ଜୀବନ ବିତାଏ । ଏଣୁ ପିଲାର ସାମାଜିକ ବିକାଶ ପାଇଁ ପିଲାକୁ ଏକାଠି ଖେଳିବା, ଅନ୍ୟମାନଙ୍କ ସହିତ ଭାଗିଦାର କରାଇବା, ବନ୍ଧୁତ୍ୱସ୍ଥାପନ କରାଇବା କାମ କରାଯିବା ଉଚିତ । ପିଲାର ସାମାଜିକ ବିକାଶ ହୋଇପାରିବ ଯଦି ପିଲାଟି ଅନ୍ୟମାନଙ୍କ ସହିତ ଖେଳେ, ଡ୍ରାମା କରେ, ଦଳଗତ କାମରେ ଭାଗ ନିଏ ।

**ବ୍ୟକ୍ତିତ୍ୱର ବିକାଶ:** ପ୍ରାକ୍-ପ୍ରାଥମିକ ସ୍ତରରେ ପିଲାର ବ୍ୟକ୍ତିତ୍ୱର ବିକାଶ ଘଟିଥାଏ । ଆତ୍ମନିର୍ଭରଶୀଳ ହେବା, ଅନ୍ୟକୁ ବିଶ୍ୱାସ କରିବା, ସହଯୋଗି ହେବା, ବନ୍ଧୁତ୍ୱଭାବ ପ୍ରକାଶ କରିବା, ପ୍ରତିକ୍ରିୟାଶିଳ ହେବା, ନମ୍ର ହେବା, ନାକାରାତ୍ମକ ଆଦି ଗୁଣଗୁଡ଼ିକର ବିକାଶ ବିଭିନ୍ନ ଖେଳ, ଗୀତ, ନାଚ, ଆଦି କାର୍ଯ୍ୟକ୍ରମ ଜରିଆରେ ବିକଶିତ ହୋଇଥାଏ ।

**ସୌନ୍ଦର୍ଯ୍ୟବୋଧ:** ପ୍ରତି ମଣିଷର ସୌନ୍ଦର୍ଯ୍ୟବୋଧ ଭିନ୍ନ ପ୍ରକାରର । ପ୍ରତ୍ୟେକ ବ୍ୟକ୍ତି ଭିନ୍ନ ଭାବରେ ଜୀବନ ବତାଇବାକୁ ଚାହାଁନ୍ତି । ନିଜ ଦେହ, ପୋଷାକପତ୍ର ଯତ୍ନନେବା, ବହିପତ୍ର, ଘରର ଆସବାବପତ୍ର ସଜେଇ ରଖିବା ଆଦି ବିଷୟରେ ପିଲାକୁ ଶିକ୍ଷା ଦେବା କଥା । ଏହାଦ୍ୱାରା ତାହାର ସୌନ୍ଦର୍ଯ୍ୟବୋଧର ବିକାଶ ହେବ । ❑❑❑

# ଶିଶୁର ବିଭିନ୍ନ ସ୍ତର

ଶିକ୍ଷାକୁ ବିଭିନ୍ନ ଭାଗରେ ବିଭକ୍ତ କରାଯାଇଛି । ୩ ବର୍ଷରୁ - ୫ ବର୍ଷ ପ୍ରାକ୍ ପ୍ରାଥମିକ ସ୍ତର ବା ଶିଶୁସ୍ତର କୁହାଯାଏ । ୬ ବର୍ଷରୁ ୧୨ ବର୍ଷ ପ୍ରାଥମିକ ସ୍ତର । ପ୍ରାକ ପ୍ରାଥମିକ ସ୍ତରରେ ଶିଶୁମାନେ ଯାହା ଦେଖନ୍ତି ତାହା କରନ୍ତି । ଏହି ସ୍ତରରେ ସେମାନେ ବେଶ୍ ଅନୁକରଣପ୍ରିୟ, ବେଶ୍ ଚଞ୍ଚଳ । ଏଣୁ କୌଣସି ଗୋଟିଏ କାମରେ ବେଶି ସମୟ ଲାଗିପାରନ୍ତି ନାହିଁ । ସ୍ଥିର ହୋଇ ବସି ପାରନ୍ତି ନାହିଁ । କିନ୍ତୁ ହାଲିଆ ହୁଅନ୍ତି ନାହିଁ । ଏ ବୟସରେ ଶିଶୁମାନଙ୍କର ମାନସିକ ପ୍ରକ୍ରିୟା ସଂଗଠିତ ନୁହେଁ କିନ୍ତୁ ସକ୍ରିୟ । କଳ୍ପନା ଶକ୍ତି ଥାଏ ପ୍ରଖର । ସବୁକିଛି ନିଜେ ଜାଣିବା ପାଇଁ ଆଗ୍ରହୀ । ନିଜ ଉତ୍ତର ନିଜେ ଖୋଜି ବୁଲନ୍ତି ଓ ତା'ର କେନ୍ଦ୍ରବିନ୍ଦୁ ସେ ନିଜେ ହୋଇଥାନ୍ତି । କଥାଛଡ଼ା ଅନ୍ୟ କଥା ଭାବନ୍ତି ନାହିଁ । ବାସ୍ତବ ଅନୁଭୂତିକୁ ନେଇ କାମ କରନ୍ତି । ଏହାକୁ ଅହଂ କେନ୍ଦ୍ରିୟ ସ୍ତର ମଧ୍ୟ କହନ୍ତି ।

ପ୍ରାଥମିକ ସ୍ତର (୬ - ୧୨ ବର୍ଷ) ଶିଶୁମାନେ ବସ୍ତୁକୁ ଧରି ସବୁ ଜିନିଷ ଜାଣିବା ପାଇଁ ଚେଷ୍ଟା କରେ । ମନେ ମନେ ଅନେକ ଯୁକ୍ତତର୍କ କରିଥାଏ ଏବଂ ଶିଶୁର ମନରେ ଅନେକ ପ୍ରଶ୍ନ ରହିଥାଏ । ୩ ବର୍ଷରେ ପିଲାମାନେ ଆତ୍ମକେନ୍ଦ୍ରିକ ହୁଅନ୍ତି । ମୁଁ, ମୋର, ଆମର ବୋଲି କହନ୍ତି । ୨ ବର୍ଷରେ ପିଲାମାନେ ଏକ ଏକା ଖେଳିଥାନ୍ତି । ୨ ବର୍ଷ ପରେ ଏକାଠି ଖେଳନ୍ତି । ୪ ବର୍ଷର ପିଲାମାନେ ବେଶି ପ୍ରଶ୍ନ ପଚାରନ୍ତି । ବଡ଼ ହେବାପାଇଁ ଇଚ୍ଛା କରନ୍ତି । ଚୌକି, ଟେବୁଲ୍, ଖଟ ଉପରେ ଚଢ଼ି ନିଜକୁ ବଡ଼ବୋଲି କହନ୍ତି ।

ଶିଶୁ ଶିକ୍ଷାବିତ୍ ମଣ୍ଟେସରୀଙ୍କ ପଦ୍ଧତି ଅନୁସାରେ ଶିଶୁର ଆଖିର ଉଚ୍ଚତା ସମାନରେ ସମସ୍ତେ ଶିକ୍ଷା ଉପକରଣ ରହିବା ଦରକାର । ଉଚ୍ଚ କଳାପଟା, ଉଚ୍ଚରେ ଶିକ୍ଷା ଉପକରଣ ପିଲାମାନଙ୍କୁ ଭଲ ଲାଗେ ନାହିଁ । ମାଳିଗୁଚ୍ଛା ସ୍ଲେଟ୍ କିମ୍ବା ଗୁଚ୍ଛାମାଳି ଦ୍ୱାରା ପିଲାମାନେ ଶିଖିବା ସହଜ ହୁଏ । ୩-୪ ବର୍ଷ ପିଲାଟିଏ ପ୍ରଥମେ ଯେକୌଣସି ଜିନିଷକୁ ଜୋରରେ ଜାବୁଡ଼ି ଧରିବାକୁ ଚେଷ୍ଟା କରେ, ଏପରିକି ସ୍ଲେଟ ଖଡ଼ି ଇତ୍ୟାଦି ମଧ୍ୟ ।

୩ - ୫ବର୍ଷର ପିଲାମାନେ ଯାହା ଦେଖିବେ ତାକୁ କହିବେ । ଉଦାହରଣ ସ୍ୱରୂପ ପାଣିର ରଙ୍ଗ କ'ଣ ପଚାରାଗଲେ, ହୁଏତ ସେମାନେ ମାଟିଆ, ନାଲି, ଆଦି କହିପାରନ୍ତି । ଆମେ ତାକୁ ପାଣିର ରଙ୍ଗ ନାହିଁ କହିବା ନିରର୍ଥକ । ଏଣୁ ପିଲା ସବୁବେଳେ ଯାହା ଦେଖେ, ତାହାହିଁ କହିଥାଏ, ଶିକ୍ଷକ ସେଠି ପିଲାକୁ ବାଧ କରିବା ଉଚିତ୍ ନୁହେଁ ।

ସେହିଭଳି ପିଲାମାନଙ୍କୁ ଶିକ୍ଷକ ସବୁବେଳେ ଉତ୍ସାହ ଦେବା ଉଚିତ । ସେମାନେ ଯାହା ବି କହିବେ, ସେମାନଙ୍କ ବୟସ ଅନୁସାରେ କରିବେ । ଚିତ୍ରକୁ ମଧ୍ୟ ଗୋଟେ ଗାର ପକେଇ ଦେଇ ପାରନ୍ତି । କିନ୍ତୁ ସେ ଗାରଟିକୁ ଦେଖି ମଧ୍ୟ ଶିକ୍ଷକ ଚିତ୍ର ଭଲ ହୋଇଛି ବୋଲି କହିଲେ ପିଲାମାନେ ଉତ୍ସାହିତ ହେବେ । ସେମାନଙ୍କର ମନବଳ ବୃଦ୍ଧିହେବ । ❑❑❑

ପ୍ରତ୍ୟେକ ପିଲା ସ୍ୱତନ୍ତ୍ର ଧରଣର ହୋଇଥାନ୍ତି । ସେମାନଙ୍କ ଭିତରେ କେତେକ ମେଳ ବି ରହିଥାଏ : ସେମାନେ ସମସ୍ତେ ସ୍ନେହ, ସୁରକ୍ଷା, ପୃଷ୍ଟିକର ଖାଦ୍ୟ ଓ ବ୍ୟାୟାମ ଲୋଡ଼ିଥାନ୍ତି । ସୁରକ୍ଷିତ ରହିବା ସାଙ୍ଗକୁ ସେମାନେ ଅନ୍ୟମାନଙ୍କର ଆଦର ବି ଲୋଡ଼ିଥାନ୍ତି । ନିଜର ଆତ୍ମବିଶ୍ୱାସର ବିକାଶ ଓ ମୁକ୍ତି ଆଡ଼କୁ ପ୍ରଥମ ପଦକ୍ଷେପ ପାଇଁ ତାଙ୍କର ଦରକାର ହୋଇଥାଏ ସହାୟତା ଓ ନିୟନ୍ତ୍ରଣର ଖିଏ ଉପାଦାନ ।

## ସେମାନେ ଜିଅନ୍ତି ଯେମିତି....ଶିଖନ୍ତି ସେମିତି ।

ଯଦି ସମାଲୋଚନା ମଧ୍ୟରେ ଜିଏଁ — ସେ ଦୋଷ ଦେବା ଶିଖେ ।
ସେ ଯଦି ପ୍ରତିକୂଳ ପରିସ୍ଥିତିରେ ଜିଏଁ — ସେ ଲଢ଼େଇ କରିବା ଶିଖେ ।
ସେ ଯଦି ଡ଼ର, ଭୟ ସହ ଜିଏଁ — ସେ ଆଶଙ୍କା/ସନ୍ଦେହ କରିବା ଶିଖେ ।
ସେ ଯଦି ଉପହାସ ମଧ୍ୟରେ ଜିଏଁ — ସେ ଲାଜକୁଳା ହୋଇଯାଏ ।
ସେ ଯଦି ଈର୍ଷ୍ୟା ମଧ୍ୟରେ ଜିଏଁ — ସେ ଅନ୍ୟକୁ ବି ଈର୍ଷ୍ୟା କରେ ।
ପିଲାଟି ଯଦି ଲଜ୍ଜିତ ସ୍ଥିତିରେ ଜିଏଁ — ସେ ନିଜକୁ ଦୋଷୀ ଭାବିବା ଶିଖେ ।
ସେ ଯଦି ଉତ୍ସାହ ପାଇ ଜିଏଁ — ସେ ଦୃଢ଼ବିଶ୍ୱାସୀ ହେବା ଶିଖେ ।
ସେ ଯଦି ସହି ସହି ଜିଏଁ — ସେ ଧୈର୍ଯ୍ୟଶୀଳ ହେବା ଶିଖେ ।
ସେ ଯଦି ପ୍ରଶଂସା ପାଇ ଜିଏଁ — ସେ ଆଦର କରି ଶିଖେ ।
ସେ ଯଦି ଗୃହୀତ ହୋଇ ଜିଏଁ — ସେ ଭଲ ପାଇବା ଶିଖେ ।
ସେ ଯଦି ସ୍ୱୀକୃତି ପାଇ ଜିଏଁ — ସେ ନିଜକୁ ଭଲ ପାଇ ଶିଖେ ।
ପିଲାଟିଏ ଯଦି ଆଦୃତ ହୋଇ ଜିଏଁ — ସେ ଶିଖେ ଯେ ଏକ ଲକ୍ଷ୍ୟ ରଖିବା ଭଲ ।
ସେ ଯଦି ବାଣ୍ଟିକୁଣ୍ଟି ଚଳି ଜିଏଁ — ସେ ଉଦାର ହେବା ଶିଖେ ।
ସେ ଯଦି ସଚ୍ଚୋଟ ପରିବେଶରେ ଜିଏଁ — ସେ ସତ୍ୟ ଓ ନ୍ୟାୟର ମୂଲ୍ୟ ବୁଝିପାରେ ।
ସେ ଯଦି ସୁରକ୍ଷାର ସହ ବଢ଼ିଥାଏ — ସେ ନିଜ ଓ ଅନ୍ୟ ଉପରେ ବିଶ୍ୱାସ ରଖେ ।
ସେ ଯଦି ବନ୍ଧୁତାର ସହ ଜିଏଁ — ସେ ପୃଥିବୀକୁ ପ୍ରିୟ ବାସଭୂମି ରୂପେ ଆଦରିନିଏ ।
ଆପଣ ଯଦି ସ୍ୱଚ୍ଛତାର ସହ ଜିଅନ୍ତି — ଆପଣଙ୍କ ଛୁଆଟି ଶାନ୍ତି ମନରେ ବଢ଼ିବ ।

ଆପଣଙ୍କ ଛୁଆଟି କେମିତି ଚାଲିଛି ?

(ଲେଖିକା: ଡ଼ରୋଥି ଲ' ନୋଲ୍‌ଟେ । ଲେଖା ସମୟ : ୧୯୫୪ ମସିହା)

ସୌଜନ୍ୟ : ମାନବିକ, ଫୁଲବାଣୀ

# ଭାଷା ଶିକ୍ଷା

ପ୍ରାକ୍-ପ୍ରାଥମିକ ବାଲବାଡ଼ି କେନ୍ଦ୍ରରେ ପିଲାମାନଙ୍କର ଭାଷାର ବିକାଶ ପାଇଁ ସହାୟକ/ଶିକ୍ଷକଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଛୋଟ ଛୋଟ ପିଲାମାନଙ୍କର ଭାଷାର ବିକାଶ ପାଇଁ ସହାୟକମାନେ ବିଶେଷ ଗୁରୁତ୍ୱ ଦେବା ଉଚିତ । ଏ କଥା ମଧ୍ୟ ସହାୟକମାନେ ମନେରଖିବା ଉଚିତ ଯେ, ପିଲାଟି କେନ୍ଦ୍ରକୁ ଆସିବା ଆଗରୁ ତା ମାତାପିତା, ଭାଇ, ଭଉଣୀ, ତଥା ଗୋଷ୍ଠୀରୁ ଅନେକ କଥା ଶିଖିଥାଏ । ସାଧାରଣତଃ ଶିକ୍ଷକମାନେ ଭାବନ୍ତି ଯେ ପିଲାମାନେ ଫମ୍ପା ମାଠିଆ, ଏଣୁ ପିଲାମାନେ ଘରେ କ'ଣ ଶିଖିଛନ୍ତି, କଣ ଅନୁଭୂତି ଅଛି ତାକୁ ବିଚାରକୁ ନିଅନ୍ତି ନାହିଁ । ସହାୟକମାନେ ଯାହା ଭଲଭାବନ୍ତି ତାହା ସେମାନଙ୍କୁ ଶିଖାଇଥାନ୍ତି । ବାଲବାଡ଼ି କେନ୍ଦ୍ରର ସହାୟକମାନେ ଏଥିପ୍ରତି ଧ୍ୟାନ ଦେବା ଉଚିତ । ପିଲାଟି ଘରେ କ'ଣ ଶିଖିଛି, କେଉଁ ବିଷୟରେ ଜାଣିଛି, ସେ ବିଷୟରେ ପିଲାଙ୍କୁ ପଚାରି ବୁଝିଦେବା କଥା । ପିଲାଟି ସ୍କୁଲକୁ ଆସିବା ପୂର୍ବରୁ ସ୍କୁଲ ତଥା ପାଠ ପ୍ରତି ତାର ବହୁତ ଭୟଥାଏ । ଏଣୁ ଶିକ୍ଷକଙ୍କର ପ୍ରଥମ କର୍ତ୍ତବ୍ୟ ହେବ ପିଲାର ଭୟ ଦୂର କରିବା । ପ୍ରତି ପିଲାକୁ ସେ ଘରେ କ'ଣ ଖାଇଛି, ଘରେ କିଏ କିଏ ଅଛନ୍ତି, ବାପା କ'ଣ କରନ୍ତି, ମା' କ'ଣ କରନ୍ତି ଆଦି ପ୍ରଶ୍ନ ପଚାରିବା ଉଚିତ । ଏହାଦ୍ୱାରା ପିଲାଟି ସହାୟକଙ୍କୁ ନିଜ ଲୋକ ଭାବିବ ଏବଂ ତା ମନର ଭୟ ଦୂର ହେବ । କେନ୍ଦ୍ରକୁ ଆସିବା ପୂର୍ବରୁ ସେମାନେ କେତେ ଶବ୍ଦ ଜାଣିଛନ୍ତି, କେଉଁ ଶବ୍ଦକୁ ଆଞ୍ଚଳିକ ଭାଷାରେ ଉଚ୍ଚାରଣ କରୁଛନ୍ତି, ସହାୟକଙ୍କୁ ଧ୍ୟାନ ଦେବାକୁ ପଡ଼ିବ ।

ସହାୟକମାନେ ଏକଥା ମଧ୍ୟ ମନେ ରଖିବା ଉଚିତ ଯେ ପିଲା ଯେଉଁ ଭାଷା କରୁଛି ତାହା ତାର ମାତୃଭାଷା । ମାତୃଭାଷା ଭଲ ଭାବରେ ନ ଶିଖିଲେ ଅନ୍ୟ ଭାଷାଗୁଡ଼ିକ ତା ପାଇଁ ସହଜ ହେବ ନାହିଁ । କୌଣସି ଭାଷା ଛୋଟ ନୁହେଁ । ଯାର ଭାଷା ରାଜ୍ୟର ଭାଷାଠାରୁ ଅଲଗା, ସେହି ପିଲାମାନେ ଅଧିକ ଗୋଟିଏ ଭାଷା ଶିଖୁଛନ୍ତି । ଉଦାହରଣ ସ୍ୱରୂପ କନ୍ଧ ପିଲାମାନେ କନ୍ଧ ଭାଷା ଶିଖିବା ସଙ୍ଗେ ଓଡ଼ିଆ ଭାଷା ଶିଖୁଛ ନ୍ତି, କିନ୍ତୁ ଓଡ଼ିଆ ପିଲାମାନେ ପୂର୍ବ ପ୍ରାଥମିକ ସ୍ତରରେ କେବଳ ଓଡ଼ିଆରେ ଶିଖୁଛନ୍ତି । ଏଣୁ କନ୍ଧମାନେ ଛୋଟବେଳୁ ଦୁଇଟି ଭାଷା ଶିଖିବାର ସୁଯୋଗ ପାଉଛନ୍ତି । ଏଣୁ ଆଞ୍ଚଳିକ ଭାଷା ଉପରେ ସହାୟକମାନେ ଗୁରୁତ୍ୱ ଦେବା ଉଚିତ । ଏଥିପାଇଁ ସହାୟକମାନେ ଯଦି ସେହି ଗୋଷ୍ଠୀର ହୋଇନଥିବେ, ସର୍ବପ୍ରଥମ କାର୍ଯ୍ୟ ପିଲାଙ୍କ ମାତୃଭାଷା ଶିଖିବା ଉଚିତ୍ । ଭାଷା ମାଧ୍ୟମରେ ହିଁ ପିଲାର ଆତ୍ମିୟ ସହାୟକମାନେ ହୋଇ ପାରିବେ ।

ଶିକ୍ଷକମାନେ ମନେ ରଖିବା ଉଚିତ ଯେ ପିଲାମାନେ କେନ୍ଦ୍ରକୁ ଆସିଲେ ସେମାନଙ୍କୁ ଶ୍ରବଣ, କଥନ, ଲିଖନ, ପଠନ ମାଧମରେ ଯିବାକୁ ହେବ । ପ୍ରଥମେ ପିଲା ସହାୟକଙ୍କଠାରୁ ଗପ, ଗୀତ ଆଦି ଶୁଣିବ ।

ତା'ପରେ ପିଲା ନିଜ ବିଷୟରେ, ଗପ ବିଷୟରେ, ଗୀତ ବିଷୟରେ କହିବ । ତା'ପରେ ପିଲା ଏହି କଥା କହୁଛି, ଏଣୁ ତାକୁ ଶିଖିବା ପାଇଁ ପ୍ରେରଣା ମିଳିବ । ଶବ୍ଦଗୁଡ଼ିକ ତା ପରିବେଶ ଏବଂ ଜାଣିଥିବା ଉଚିତ୍, ତାପରେ ସେ ଅଜଣା ଶବ୍ଦଗୁଡ଼ିକ ଶିଖିବ ଏବଂ ଉଚ୍ଚାରଣ କରିବ ।

ସାଧାରଣତଃ, ପ୍ରାକ୍-ପ୍ରାଥମିକ ବିଦ୍ୟାଳୟର ପିଲାମାନଙ୍କୁ ବିଭିନ୍ନ ଉପକରଣ ମାଧ୍ୟମରେ ଶିକ୍ଷାଦାନ ହେବା ଦରକାର । ଶିକ୍ଷକମାନେ ଅକ୍ଷରସେଟ୍, ଅକ୍ଷର ଚାର୍ଟ ମାଧ୍ୟମରେ ଶିଖିବେ । ଏଥିପାଇଁ ବିଭିନ୍ନ ଖେଳ ବ୍ୟବହାର କଲେ ପିଲାମାନେ ଖେଳି ଖେଳି ସେମାନଙ୍କର ଭାଷାର ବିକାଶ ହେବ ।



# ବାଲବାଡ଼ି କେନ୍ଦ୍ରରେ ଗଣିତ ଶିକ୍ଷାଦାନ

ସାଧାରଣତଃ ଗଣିତ ଆମେ ନିତିଦିନ ଜୀବନରେ ସବୁବେଳେ କସି ଥାଆନ୍ତି । ଧନୀ ହେଉ ବା ଗରିବ ହେଉ, ପାଠୁଆ ହେଉ ବା ଅପାଠୁଆ ହେଉ, ଝିଅ ହେଉ ବା ପୁଅ ହେଉ, ଆମ ଜାଣତରେ ହେଉ ବା ଅଜାଣତରେ ହେଉ ଆମେ ସବୁବେଳେ ଗଣିତ କସୁ । କିନ୍ତୁ ଆମର ସମସ୍ତଙ୍କର ଧାରଣା ଯେ କେବଳ ସଂଖ୍ୟା ଶିଖିଲେ, ବିଦ୍ୟାଳୟରେ ପାଠ ପଢ଼ିଲେ ଯାଇ ଆମେ ଗଣିତ ଶିଖି ପାରିବା । ପିଲାଟି ବିଦ୍ୟାଳୟକୁ ଆସିବା ପୂର୍ବରୁ ଗଣିତ ଗୋଟେ କଷ୍ଟ ବୋଲି ଭାବି ଦେଇଥାଏ । ଏଣୁ ଗଣିତ ପ୍ରତି ତା' ମନରେ ଭୟ ଥାଏ । ଏଣୁ ଅନେକ ପିଲା ପରବର୍ତ୍ତୀ ସମୟରେ ଗଣିତରେ ଖରାପ କରିଥାନ୍ତି । ଗଣିତକୁ ଏକ ବେରସିକ ପାଠ ହିସାବରେ ଧରି ନିଆଯାଇଥାଏ । ଗଣିତ ଶିକ୍ଷକମାନେ ଗଣିତ ଶିକ୍ଷାକୁ ନିରସ ଶିକ୍ଷା ହିସାବରେ ପାଠ ପଢ଼େଇଥାନ୍ତି ।

ତାହାହେଲେ ଗଣିତ ଶିକ୍ଷା ପିଲାମାନଙ୍କୁ କିପରି ଦିଆଯିବ, ଗଣିତ କିପରି ସରସ ହୋଇପାରିବ , ଏବଂ ଗଣିତ ଏକ ସହଜ ପାଠ ବୋଲି ପିଲାମାନେ କିପରି ଭାବିବେ ଏହା ଜଣେ ଗଣିତ ଶିକ୍ଷକଙ୍କ ପ୍ରତି ଆହ୍ୱାନ ।

## ଶିକ୍ଷକମାନେ ପ୍ରଥମେ କ'ଣ କରିବେ ?

ଶିକ୍ଷକମାନେ ପ୍ରଥମେ ପିଲାମାନଙ୍କୁ ଗଣିତ କ'ଣ, ଆମେ ଦୈନନ୍ଦିନ ଜୀବନରେ କିପରି ଗଣିତ କସୁ, ଗଣିତ ଶିକ୍ଷାର ଆରମ୍ଭ କିପରି ହେଲା ଧାରଣା ଦେବା । ଜଣେ ପାଠ ନ ପଢ଼ିଥିବା ଲୋକେ କିପରି

ଗଣିତ କସେ, ତା ଦୈନନ୍ଦିନ ଜୀବନରେ ଗଣିତ କିପରି ବ୍ୟବହାର ହୁଏ ଆମେ ପଚାରି ବୁଝିବା । ସେମାନେ ନିଶ୍ଚୟ କହିବେ ଯେ ଘରେ ରୋଷେଇ କଲାବେଳେ, ଖାଇବାକୁ ଦେଲାବେଳେ, କାଠକୁ ଗଲାବେଳେ, ଚାଷ କଲାବେଳେ, ସବୁ କ୍ଷେତ୍ରରେ ସେ ହିସାବ କରେ । ଏଣୁ ମଣିଷ ସବୁ ଦିନରେ ଗଣିତ କସେ । ତାହାହେଲେ ଗଣିତ କ'ଣ ବୋଲି ପିଲାମାନେ ପଚାରିବେ । ସେମାନେ ନିଶ୍ଚୟ ଏଥର କହିବେ ଯେ ଗଣିତ ସମସ୍ତେ କରୁଛନ୍ତି । ଗଣିତ ଏଣୁ ଏକ କିଛି ପାଠ ନୁହେଁ ?

ଆମେ ସାଧାରଣତଃ ଦେଖୁ ଯେ ଶିକ୍ଷକମାନେ ପ୍ରଥମରୁ ପିଲାମାନଙ୍କୁ ସଂଖ୍ୟା ଶିଖାଇଥାନ୍ତି । ୧, ୨,...ଆଦି ସିଲଟରେ ଲେଖି ଦିଅନ୍ତି । ପିଲାଟି ସେଗୁଡ଼ିକ ଅତି ନିରସ ଭାବେ ଶିଖନ୍ତି ଏବଂ ମନେ ରଖନ୍ତି । ଏଣୁ ସେମାନେ ପରବର୍ତ୍ତି ସମୟରେ ସଂଖ୍ୟାର ମୂଲ୍ୟ ଜାଣିପାରନ୍ତି ନାହିଁ । ୩ ବଡ଼ ନା ୪ ବଡ଼, ୧୦ ବଡ଼... ଆଦି ପ୍ରଶ୍ନର ଉତ୍ତର ସେମାନଙ୍କୁ ଦେବାପାଇଁ କଷ୍ଟ ହୋଇଥାଏ । ଏଣୁ ପ୍ରତ୍ୟେକ ଶିକ୍ଷକଙ୍କୁ ଦେଖିବାକୁ ପଡ଼ିବ ଯେ ସଂଖ୍ୟା କିପରି ବ୍ୟବହାର ହେଉଛି ? କମ୍ ବେଶି ଜାଣିବା ପାଇଁ ଆମେ ସାଧାରଣତଃ ସଂଖ୍ୟା ବ୍ୟବାର କରିଥାଉ । ଏଣୁ ଆମେ ସଂଖ୍ୟା ଶିଖାଇବା ପୂର୍ବରୁ ବଡ଼-ସାନ, କମ୍-ବେଶି, ମୋଟା-ପତଳା, ଡେଙ୍ଗା-ବାଙ୍ଗରା ଆଦିର ଧାରଣା ପିଲାମାନଙ୍କୁ ଦେବା । ପାଠ ନ ପଢ଼ିଥିବା ଲୋକଙ୍କର ଏପରି ଧାରଣା ଥାଏ । କେଉଁଟା ବେଶି, କେଉଁଟା କମ୍ ସେ ଜାଣିପାରେ । ଆମେ ସଂଖ୍ୟା ଶିଖୁ ଏବଂ ଶିଘ୍ର ଶିଘ୍ର ହିସାବ କରିପାରିବ, ବଡ଼ ବଡ଼ ସମସ୍ୟା ସମାଧାନ କରିପାରିବା ଅଳ୍ପ ସମୟରେ । ଏଣୁ ଆମେ ସଂଖ୍ୟା ଶିଖୁଛୁ ଓ ସଂଖ୍ୟାକୁ ନେଇ ଗଣିତ ପଢୁଛେ । ଏଣୁ ସଂଖ୍ୟା ଶିଖିବା ପୂର୍ବରୁ କମ୍-ବେଶି, ମୋଟା-ପତଳା, ଡ଼େଙ୍ଗା-ମୋଟା ଆଦି ଧାରଣା ଦେବେ । ତାପରେ ସଂଖ୍ୟା ଶିଖିବେ ଏବଂ ପ୍ରତ୍ୟେକଙ୍କର ମୂଲ୍ୟ ପିଲାମାନେ ଜାଣିବେ ।

# ଗଣିତ

## କାର୍ଯ୍ୟ (ବଡ଼ - ସାନ)

ପିଲାମାନଙ୍କୁ ଗୋଡ଼ି ସଂଗ୍ରହ ପାଇଁ କୁହାଯିବ । ପିଲାମାନେ ଗୋଡ଼ି ଗୁଡ଼ିକୁ ଆଣିବା ପରେ ୩ ଭାଗ କରିବା ପାଇଁ କୁହାଯିବ ଏବଂ ସାନରୁ ବଡ଼ କ୍ରମରେ ସଜେଇ ରଖିବା ପାଇଁ କୁହାଯିବ ।







ତାହାପରେ ସବୁ ଗୋଡ଼ିକୁ ମିଶାଇ ଦିଅ ଏବଂ ଦୁଇ ଭାଗ କରି ସାନ ବଡ଼ କ୍ରମାନ୍ୱୟରେ ସଜାଇ ରଖିବା ପାଇଁ କୁହାଯିବ ।



ଏହାପରେ ପୁନର୍ବାର ସବୁ ଗୋଡ଼ିକୁ ମିଶାଇ ଦେଇ ସବୁ ଗୋଡ଼ିକୁ ସାନରୁ ବଡ଼ କ୍ରମାନ୍ୱୟରେ ସଜେଇ ରଖିବାକୁ କୁହାଯିବ ।

ପତ୍ର ସଂଗ୍ରହ କରିବା ପାଇଁ ପିଲାମାନଙ୍କୁ କୁହାଯିବ । ପତ୍ରଗୁଡ଼ିକ ସଜେଇ ରଖିବା ପାଇଁ କୁହାଯିବ ।






## ଆକାର

କାଠି ସଂଗ୍ରହ କରିବା ପାଇଁ ପିଲାମାନଙ୍କୁ କୁହାଯିବ । ସେଗୁଡ଼ିକ ବଡ଼ରୁ ସାନ କ୍ରମରେ ଓ ସାନ ରୁ ବଡ଼ କ୍ରମରେ ସଜେଇ ରଖିବା ପାଇଁ କୁହାଯିବ ।



ପତ୍ର ସଂଗ୍ରହ କରି ପତ୍ରରୁ ବିଭିନ୍ନ ଆକାର ବିଷୟରେ ବୁଝେଇବାକୁ ପଡ଼ିବ ।
ବିଭିନ୍ନ ଆକାରର କାଗଜ କାଟି ମଧ୍ୟ ଆକାର ସମ୍ବନ୍ଧରେ ଧାରଣା ଦିଆଯାଇପାରିବ ।



ପିଲାମାନଙ୍କୁ ମଧ୍ୟ ମୋଟା-ପତଳା, ଡେଙ୍ଗା-ବାଙ୍କରା, ଆଦି କରି ସଜେଇ ଠିଆ କରାଯାଇ ପାରିବ ।

### କମ୍ ବେଶି

ପଥର କିମ୍ବା ପତରଗୁଡ଼ିକୁ କମ୍-ବେଶି କରି ବିଭିନ୍ନ ଜାଗାରେ ରଖି କମ୍ ବେଶିର ଧାରଣା ଦିଆଯିବ । ସେଥିରୁ ସଂଖ୍ୟା ଶିକ୍ଷା ଆରମ୍ଭ ହେବ ।



ଏଭଳି ଅନେକ କାର୍ଯ୍ୟକ୍ରମ ପିଲାମାନଙ୍କର ଗଣିତ ଜ୍ଞାନ ବୃଦ୍ଧିପାଇଁ କରାଯାଇ ପାରିବ । ଏଥିପାଇଁ ଶିକ୍ଷକମାନେ ବିଭିନ୍ନ ପୁସ୍ତକ-ପତ୍ରିକା, ବ୍ୟକ୍ତିବିଶେଷଙ୍କର ସହାୟତା ନେଇପାରିବେ ।

## ଗଣନା

ମୋର ଝିଅାରୀଟିର ବୟସ ସେତେବେଳେ ଚାରି କି ପାଞ୍ଚ ବର୍ଷ ହୋଇଥିଲା । ତା'ର ବଡ଼ ଭାଇ ଭଉଣୀମାନେ ତା'କୁ ଗଣିବା ଶିଖାଉଥାନ୍ତି, ଠିକ୍ ସିସେମ୍ ସ୍କୁଲ ପ୍ରଣାଳୀରେ । ମୁଁ ଶୁଣୁଥିଲି; ସେ କହୁଥିଲା, ''ଏକ, ଦୁଇ, ତିନି, ଚାରି, ସାତ, ଛଅ, ଆଠ....'' । ସେତିକି କହିଲାବେଳେ ଶୁଣିଲି, ସେ ଭିତରୁ ଦି' ଜଣ ତା'କୁ କହୁଛନ୍ତି, ''ନାଇଁ ! ନାଇଁ ! ସାତ ଆସିବ ଛଅ ଉତ୍ତାରୁ ।''

ସେଇ ସମୟରେ ଏବଂ ସେ ଘଟଣା ପରେ ମୁଁ ଅନେକ ସମୟରେ ମନେ କରୁଛି, ''ପିଲାଏ ଏପରି କଥାରୁ ସଂଖ୍ୟା ବିଷୟରେ ଗୋଟିଏ ଅଦ୍ଭୁତ ଧାରଣା ପୋଷଣ କରିପାରନ୍ତି । ସେମାନଙ୍କ ମନରେ

ଛୋଟ ଛୋଟ ଜୀବଙ୍କର ଗୋଟିଏ ଶୋଭାଯାତ୍ରା ବାହାରିଲା ପରି ଚିତ୍ରଟିଏ ଆଙ୍କି ହୋଇ ଯାଉଥିବ । ସେଥିରେ ସବା ଆଗରେ ଥିବା ପ୍ରଥମ ଜୀବଟିର ନାମ ଏକ ଏବଂ ଦ୍ୱିତୀୟରେ ଥିବା ଜୀବଟି ଦୁଇ, ତୃତୀୟରେ ତିନି, ଏଇପରି । ତା'ପରେ ସେଇ ଟିକି ଜୀବଗୁଡ଼ିକ ପିଲା ମନରେ ନାନା ଅର୍ଥହୀନ ନାଚ ଆଉ ଦୁଷ୍ଟାମୀ ଆରମ୍ଭ କରିଦେବେ । ସେତେବେଳକୁ ଲୋକେ ହୁଏତ କହୁଥିବେ, "ଦୁଇରେ ଦୁଇ ମିଶିଲେ ଚାରି ହୁଏ । ଏହା ଫଳରେ ଖୁବ୍ ଶୀଘ୍ର ପିଲା ମନରେ ସଂଖ୍ୟା ସମ୍ବନ୍ଧୀୟ ସେ ସବୁ ଧାରଣା ଯୋଗୁଁ ବଡ଼ ଧରଣର ବିଶୃଙ୍ଖଳା ଜାତ ହେବ । ମୋ ଝିଆରୀ ପକ୍ଷରେ ପ୍ରକୃତରେ ସେଇଆ ଘଟିଲା । କେତେ ବର୍ଷ ପରେ କେତେକ ବୟସ୍କଙ୍କୁ ମୋ ଧାରଣା ବିଷୟରେ ପଚାରିଲି । ସେମାନେ ଗଣିତରେ ସମସ୍ତେ ବିଶେଷ ଦୁର୍ବଳ ଥିଲେ । ସେମାନେ ହସି ଉଠିଲେ, ଆଉ କହିଲେ ଯେ, ପ୍ରକୃତରେ ତାଙ୍କ ମନରେ ସଂଖ୍ୟା ବିଷୟରେ ସେ ପ୍ରକାର ଧାରଣା ଜାତ ହୋଇଥିଲା । ଆଉ ସେଇ କାରଣରୁ ଗଣିତ ଶିଖିବାବେଳେ ସେମାନଙ୍କୁ ସବୁବେଳେ ସେପ୍ରକାର ଅସୁବିଧା ଭୋଗ କରିବାକୁ ପଡୁଥିଲା ।

ଏଇ କାରଣରୁ ପିଲାଙ୍କୁ ପ୍ରକୃତ ଜିନିଷ ନଦେଇ ସେପରି ସଂଖ୍ୟା ଶିଖାଇବା କଦାପି ଉଚିତ ନୁହେଁ ବୋଲି ମୁଁ ଗଭୀର ଭାବେ ବିଶ୍ୱାସ କରେ । ଅବଶ୍ୟ ଶିଶୁ ଶ୍ରେଣୀର ଶିକ୍ଷକମାନେ ତାଙ୍କ ପିଲେ ଯେପରି 'ଏକ, ଦୁଇ,ତିନି....'' କହିବାରେ ସମର୍ଥ ହେବେ, ସେଥିପାଇଁ ଚେଷ୍ଟା କରିବେ । କିନ୍ତୁ ଏଇ ସାମର୍ଥ୍ୟ ସଂଖ୍ୟା ସମ୍ବନ୍ଧୀୟ ସ୍ୱଷ୍ଟ ଧାରଣା ଲାଭ କରିବାରେ ଆଦୌ ସହାୟକ ନୁହେଁ ।

ଅନ୍ୟ ପ୍ରକାରେ କହିବାକୁ ଗଲେ, ଯେତେବେଳେ ଜଣେ ପିଲାର ଗୋଟିଏ ସଂଖ୍ୟା ସହିତ ଭେଟ ହୁଏ, ସେତେବେଳେ ସେ ସଂଖ୍ୟାକୁ ବିଶେଷ୍ୟ' ବଦଳରେ 'ବିଶେଷଣ' ରୂପରେ ତା'କୁ ଭେଟିବା ଉଚିତ । ଏହା କଦାପି 'ତିନି' କିମ୍ବା 'ସାତ' ହେବା ଉଚିତ ନୁହେଁ । ମାତ୍ର ଦୁଇଟି ମୁଦ୍ରା/ତିନିଗୋଟି ନିଆଁପେଡ଼ି/ ଚାରିଗୋଟି ଚାମୁଚ କିମ୍ବା ଏପରି କିଛି ବସ୍ତୁର ବିଶେଷଣ ହେବ । ପରେ ଠିକଣା ସମୟରେ, ହୁଏତ ବହୁତ ବିଳମ୍ବରେ, ପିଲା ସଂଖ୍ୟାକୁ ବିଶେଷ୍ୟ ରୂପେ ବୁଝି ପାରିବାର ଚେତନା ଲାଭ କରିବ । ସେତେବେଳେ ''ପାଞ୍ଚ'' କହିଲେ ସେ ଭିତରେ ଥିବା ପାଞ୍ଚୋଟିଯାକ ପଦାର୍ଥର ଗୁଣଧର୍ମ ଗୋଟିଏ ପ୍ରକାରର ବୋଲି ସେ ବୁଝିପାରିବ ।

ମୁଁ ଆହୁରି ମଧ୍ୟ କହିବି, ପିଲାଏ ସଂଖ୍ୟା ସହିତ ପରିଚିତ ହେବା ସଙ୍ଗେ ସେମାନଙ୍କୁ ଗଣନା-ଶୃଙ୍ଖଳା ଶିକ୍ଷା ଦେବା ଆଦୌ ଦରକାର ନୁହେଁ । ଏଥିରେ କୌରସି ଯୁକ୍ତସଙ୍ଗତ କାରଣ ମଧ୍ୟ ନାହିଁ । ସେ ଦୃଷ୍ଟିରୁ ଗୋଟିଏ ସମୟରେ କୌଣସି ଜିନିଷରୁ ଦୁଇଗୋଟି ଦେଖାଇପାରୁ । କିନ୍ତୁ ଏହା ପରେ ପରିସ୍ଥିତି ଅନୁସାରେ ହୁଏ ତ ପାଞ୍ଚଗୋଟି ଅନ୍ୟ କୌଣସି ଜିନିଷ ନେଇପାରିବା । ସେପରି ଆଠ କିମ୍ବା ଅନ୍ୟ ସଂଖ୍ୟକ ଯେ କୌଣସି ବସ୍ତୁ କଥା ପ୍ରସଙ୍ଗରେ ଆଲୋଚିତ ହେବ । ପ୍ରକୃତରେ ଏଇ ସଂଖ୍ୟା ବେଶ୍ ଯତ୍ର ତତ୍ର ନାନା ଭାବରେ ପଡ଼ି ରହିଛି ଏବଂ ପିଲେ ଯାହା ଯେପରି ଯେଉଁଠି ଦେଖିବେ, ତାହାକୁ ସେପରି ଗ୍ରହଣ କରିବା ପାଇଁ ପ୍ରସ୍ତୁତ ରହିବେ ।

ପିଲାଙ୍କୁ ଏ ଦିଗରେ ସାହାଯ୍ୟ କରିବାପାଇଁ, ଅନ୍ତତଃ କେତେକ ସମୟରେ, ସେମାନଙ୍କୁ ନାନା ଜିନିଷ ଦେଖାଇବା ଓ ଚିହ୍ନେଇବା ସହିତ ଛୋଟ ଛୋଟ ସଂଖ୍ୟାର ଧାରଣା ଦେବା ଉଚିତ । ପ୍ରକୃତରେ ଦେଖିବା କିମ୍ବା ଖିଆଲରେ ଗଢ଼ିବା ନାନା କାର୍ଯ୍ୟରୁ ସେମାନଙ୍କୁ ଦଶ ଭିତରେ ସଂଖ୍ୟାଗୁଡ଼ିକର ଧାରଣା ଦେଇପାରିବ । ଗୋଟିଏ ଘଟଣାରେ ପିଲାଟିଏ କୌଣସି ଜିନିଷରୁ ତିନୋଟି ଦେଖିବା ପରେ, ଆଉ ଏକ ଘଟଣାରେ ସେଥିରୁ ଧାଡ଼ିଏ ମଧ୍ୟ ଦେଖିପାରେ; ଅନ୍ୟ ଏକ ସ୍ଥାନରେ ଏହାକୁ ସେ ତ୍ରିଭୁଜ ଆକାରରେ ସଜେଇ ହୋଇ ରହିଥିବାର ଦେଖିପାରେ । କେଉଁଠି ଚାରିଟି ଜିନିଷ ଗୋଟିଏ ଚତୁର୍ଭୁଜ ରୂପରେ ବା, ତିନୋଟି ଜିନିଷ ଧାଡ଼ିରେ ଥାଇ ଆଉ ଗୋଟିଏ ଏହାର ଉପରେ ରହିଥିବାର ଦେଖିବାକୁ ମିଳିପାରେ । ସେହିପରି ପାଞ୍ଚଟି ଜିନିଷ ସଜେଇ ହେଇ ପଞ୍ଚଭୂଜ ରୂପରେ ରହିପାରନ୍ତି ବା ଚାରିଟି ଜିନିଷ ଓ ଆରଟି ଏହା ଉପରେ ଥାଇପାରେ । ଏହାର ଏକ ଉଦାହରଣ ହେଉଛି: ପିଲା ଆଙ୍କିଥିବା ଘର ଛବି ଅଥବା ଗୋଟିଏ ବର୍ଗକ୍ଷେତ୍ର ଭିତରେ କିଛି ଗୋଟିଏ ଜିନିଷ ରହିଥିବ । ସେପରି ତିନୋଟି ଜିନିଷ ଦୁଇଟି ଧାଡ଼ିରେ ରହିଲେ କିମ୍ବା ତଳେ ତିନୋଟି, ତା' ଉପରେ ଦୁଇଟି ଓ ତା ଉପରେ ଗୋଟିଏ ଜିନିଷ ରହିଲେ ଆମେ 'ଛଅ'ର ଆକୃତି ପାଇପାରିବା । ଏହାକୁ ଶିଖାଇବାପାଇଁ ଆମେ ମଲାଟର ଗୋଟିଏ ପାଖରେ ଏପରି ଆକୃତିଗୁଡ଼ିକ ଆଙ୍କିଦେବା ଓ ଏହାର ଆରପାଖରେ ଆମେ ସଂଖ୍ୟା ସଙ୍କେତଟିକୁ ଲେଖିପାରିବା । କିନ୍ତୁ ପିଲାଙ୍କ ମୁହୂର୍ତ୍ତକ ପାଇଁ ବି ସଂଖ୍ୟା ଘୋଷିବାକୁ ବାଧ କରାଯିବା କିମ୍ବା ଉତ୍ସାହିତ କରାଯିବା ପରାମର୍ଶକୁ ମୁଁ ସମର୍ଥନ କରି ପାରିବି ନାହିଁ । କିନ୍ତୁ ଏପରି ଅଙ୍କିତ ମଲାଟଗୁଡ଼ିଏ ଯଦି ପିଲାଙ୍କୁ ଦେଖିବାକୁ ଓ ସେସବୁ ନେଇ ଖେଳିବାକୁ ଦିଆଯାଏ, ତେବେ ପିଲେ ନାନା ଭାବରେ ସେ ସବୁ ବ୍ୟବହାର କରି ଆପେ ଆପେ ସେ ଭିତରେ ଥିବା ସମ୍ପର୍କଟିକୁ ଅନୁଭବ କରିପାରନ୍ତି ଓ ସଂଖ୍ୟା ପରିଚୟ ପାଇପାରନ୍ତି । ମୋ ମତରେ ଛୋଟ ଛୋଟ ସଂଖ୍ୟାର ଗଣନା ଶିଖେଇବା ବଦଳରେ ପିଲାକୁ ତା' ବାଟରେ ସେ ଧାରଣା ଲାଭ କରିବାକୁ ସୁବିଧା ଦେବା ଭଲ ।

ଏ ଦିଗରେ ହଳେ ମୁଖା ଭଲ ଖେଳ ସାମଗ୍ରୀର କାମ କରିପାରିବ । ଛୋଟପିଲାଙ୍କୁ ଏପରି କିଛି ମୁଖା ଦେଇ ଖେଳରେ ମତେଇ ଦେଲେ, ସେମାନେ ଖୁସିରେ ଖେଳି ଗୋଟାକର ଆକୃତିକୁ ଆଉ ଏକ ଆକୃତି ସହ ମେଳେଇବା ସଙ୍ଗେ ସଙ୍ଗେ ସେମାନେ ଗଣନା କରିବାକୁ ଆଗ୍ରହୀ ହୋଇ ଉଠିବେ ବୋଲି ମୁଁ ଭାବୁଛି । ଏହାକୁ ଆଧାର କରି ସେମାନେ କ୍ରମଶଃ ହିସାବ କରିବା ବି ଶିଖିଯାଇପାରିବେ ।

ଆଉ ଗୋଟିଏ ବିଷୟ ଗୁରୁତ୍ୱପୂର୍ଣ୍ଣ ବୋଲି ମୋର ମନେ ହୁଏ । ବୟସ୍କମାନେ ଯେତେବେଳେ ପିଲାଙ୍କ ପାଇଁ କୌଣସି ଜିନିଷ ଗଣନା କରିଥାନ୍ତି, ସେତେବେଳେ ସେମାନେ ଜିନିଷଗୁଡ଼ିକୁ ଗୋଟିକରୁ ଆଉ ଗୋଟିଏକୁ ଘୁଞ୍ଚାଇ ଦେଖନ୍ତି ନାହିଁ, ବରଂ ''ଏକ, ଦୁଇ, ତିନି...'' ଗଣି ଚାଲନ୍ତି । ପିଲାଟି ଦେଖୁଥାଏ, ଆଉ ବୟସ୍କଟି ଏକା ପରି ଦିଶୁଥିବା ଜିନିଷଗୁଡ଼ିକୁ ଗଣିଲାବେଳେ କେବଳ ଛୁଇଁ ଦେଇ ଭିନ୍ନ ଭିନ୍ନ ସଂଖ୍ୟାର ନାଆଁରେ ଗଣି ଚାଲନ୍ତି, ଫଳରେ ପିଲାଟି ମନରେ ସେହି ଏକା ପରି ଦିଶୁଥିବା ଜିନିଷଗୁଡ଼ିକର ଗୋଟିଏ

ବିଚିତ୍ର ଭିନ୍ନ ନାଆଁ ଅଛି ବୋଲି ଧାରଣା ହୁଏ । ପିଲାର ଏଇ ଭ୍ରାନ୍ତିକୁ ସହଜରେ ଦୂର କରାଯାଇପାରିବ । ଆମେ ଜିନିଷଗୁଡ଼ିକୁ ଗଣିଲାବେଳେ ଯଦି ପ୍ରଥମେ ଆରମ୍ଭରେ କହିବା, ''ଆମ ପାଖରେ ଗୋଟିଏ (ଏକ) ଅଛି ।'' ତା'ପରେ ଆଉ ଗୋଟିଏ ଆଣି ପ୍ରଥମଟି ସହିତ ରଖି ''ଏବେ ଆମର ଦୁଇଟି (ଦୁଇ) ଜିନିଷ ହେଲା।'' ବୋଲି କହିବା । ଏପରି ଭାବେ ''ଏବେ ତିନି ହେଲା'', ''ଏବେ ଚାରି'', ''ଏବେ ପାଞ୍ଚ''...ଆଦି କହିବା । ଏହିପରି ଭାବେ ଜିନିଷ ଭିତରୁ କୌଣସି ଗୋଟିଏକୁ କୌଣସି ସଂଖ୍ୟାର ନାମ ନଦେଇ, ମିଶେଇଲା ପରେ ସେଇ ସବୁକୁ ନେଇ ସଂଖ୍ୟାଟି କହି ଆରପାଖରେ ରଖିବା ।

ଗଣିବା ଶିଖିବା ଭିତରେ ସଂଖ୍ୟାର ଅନ୍ୟ ରୂପ ଅର୍ଥାତ୍ ଧାଡ଼ି ଭିତରେ ପ୍ରତ୍ୟେକ ଜିନିଷର ନିର୍ଦ୍ଦିଷ୍ଟ ସ୍ଥାନ ଜଣେଇବା ପାଇଁ ପିଲାଙ୍କୁ ଆମେ ଶିଖେଇ ପାରିବା । ଧାଡ଼ି କରି କିଛି ଜିନିଷ ରଖି ଗୋଟିକ ପରେ ଗୋଟିକୁ ଛୁଇଁ ଆମେ କହିପାରିବା : ''ଏଇଟା ପ୍ରଥମ ବସ୍ତୁ, ଏଇଟା ଦ୍ୱିତୀୟ, ତା'ପରେ ଏଇଟା ତୃତୀୟ,...ଚତୁର୍ଥ....ପଞ୍ଚମ....ଷଷ୍ଠ....ଇତ୍ୟାଦି ଏବଂ ପିଲାଙ୍କୁ ଧାରଣା ଦେଇପାରିବା । କିନ୍ତୁ ପ୍ରଥମରୁ ପିଲାଙ୍କୁ ମୌଳିକ ଓ ଯୌଗିକର ଧାରଣା ଦେବା ଅନାବଶ୍ୟକ । କଥାଭାଷା ଭିତରେ ଆମେ ଠିକ୍ ଭାବେ ଠିକଣା ସ୍ଥାନରେ ଗରୁରୁତ୍ୱ ଦେଇ ସେଇ ପଦଗୁଡ଼ିକ ବ୍ୟବହାର କଲେ, ପିଲେ ଖୁବ୍ କମ୍ ସମୟ ଭିତରେ ସଂଖ୍ୟାବୋଧକ ଏଇ ଦୁଇପ୍ରକାର ଶବ୍ଦ ଭିତରେ ଥିବା ପାର୍ଥକ୍ୟ ଅନୁଭବ କରିପାରିବେ ।

କୌଣସି ଜିନିଷ ଗଣିଲାବେଳେ ଆମେ ସବୁବେଳେ ଗୋଟିଏ ଗୋଟିଏ କରି ଗଣିବା ଉଚିତ ନୁହେଁ । ବେଳେବେଳେ ଦୁଇ ଦୁଇଟା ଜିନିଷକୁ ଏକାଠି କରି ଗଣିବା । ଦୁଇଟି ବସ୍ତୁକୁ ଧରି ''ଆମର ଏବେ ଦୁଇ ହେଲା'' କହି ଦୁଇଟି ଜିନିଷକୁ ଏକାଠି ନେଇ ଅନ୍ୟ ପାଖରେ ରଖିବା । ସେଥିରେ ଆଉ ଦୁଇଟି ବ ସ୍ତୁ ମିଶେଇ 'ଏବେ ଚାରି'...ସେପରି 'ଛଅ' ଆଦି କହି ଗଣି ଚାଲିବା, ସେପରି ଭାବେ ତିନି-ତିନିଟା, ଚାରି-ଚାରିଟା....ଇତ୍ୟାଦି ଗଣି ଶିଖିବା ଦରକାର । କେବଳ ସହଜରେ ନିଅ-ଆଣ କରିପାରିବା ଭଳି ଜିନିଷ ବ୍ୟବହାର କରିବା ଭଲ ।

ଅନେକ ସମୟରେ ମୌଳିକ ଓ ଯୌଗିକ ଶିଖେଇ ନଥିଲେ ମଧ୍ୟ ସାଧାରଣ କଥାଭାଷା ଭିତରୁ କେତେକ ପିଲା ସେ ସବୁ ବୁଝି ଯାଇଥାନ୍ତି; କିନ୍ତୁ ଅନେକ ପିଲାଙ୍କର ଏ ଧାରଣା ନଥାଏ । ପିଲାଏ ଆପେ ବୁଝି ନେବା ଅବଶ୍ୟ ବିସ୍ମୟକର । ତେବେ, ସେଥିପାଇଁ ବିଧିବଦ୍ଧ ଶିକ୍ଷା ଅନାବଶ୍ୟକ । ଉପରେ ଆଲୋଚନା କରାଯାଇଥିବା ପଦ୍ଧତିରେ ସବୁ ପିଲାଙ୍କୁ ଏଇ ଧାରଣା ଦିଆଯାଇପାରିବ ।

*(ଉକ୍ତ ବିଷୟଟି 'ଜନହୋଲ୍ଟ'ଙ୍କ ଦ୍ୱାରା ଲିଖିତ 'ସବୁ ସମୟରେ ଶିଖିବା' ପୁସ୍ତକରୁ ନେଇଛୁ)*



# ପିଲାଙ୍କ ସ୍ୱାସ୍ଥ୍ୟ ଏବଂ ପୁଷ୍ଟିକର ଖାଦ୍ୟ

ପିଲାର ସ୍ୱାସ୍ଥ୍ୟ ତାର ପରିବାରର ସ୍ୱାସ୍ଥ୍ୟ ଉପରେ ନିର୍ଭର କରେ। ବିଶେଷ ଭାବରେ ମା' ଗର୍ଭଧାରଣ ଏବଂ ଲାଳନ ପାଳନ ବେଳେ ଏହା ପିଲାର ଶାରୀରିକ ବିକାଶର ମୂଳପିଣ୍ଡ ଅଟେ। ପୁଷ୍ଟିକର ଖାଦ୍ୟ ଅଭାବରେ ମା'ର ସ୍ୱାସ୍ଥ୍ୟ ବହୁତ ଖରାପ ହୋଇପଡ଼େ। ମା' ଗର୍ଭବତୀ ଥିବା ବେଳେ ଏଭଳି ଅବସ୍ଥା ଯଥା ଓଜନ ହ୍ରାସ ହେବା, ନିର୍ଦ୍ଧାରିତ ସମୟ ପୂର୍ବରୁ ଜନ୍ମହେବା ଆଦିର କାରଣ ହୋଇଥାଏ। ଏଣୁ ଗର୍ଭବତୀ ମା'ଙ୍କୁ ପୁଷ୍ଟିକର ଖାଦ୍ୟ ବହୁତ ଜରୁରୀ ଅଟେ।

ପୁଷ୍ଟିହୀନତା ଉପଯୁକ୍ତ ଖାଦ୍ୟ ଅଭାବରୁ ଘଟି ଥାଏ। ବୟସ ଅନୁସାରେ ପ୍ରତ୍ୟେକ ପିଲା ଏକ ନିର୍ଦ୍ଦିଷ୍ଟ ଖାଦ୍ୟ ଦରକାର କରିଥାଏ। ସେଥିରୁ ବିଚ୍ୟୁତ ହେଲେ ପୁଷ୍ଟିହୀନତା ହେଲା ବୋଲି କୁହାଯାଏ। ଆମ ଦେଶର ପିଲାମାନେ ବିଶେଷ ଭାବରେ ପୁଷ୍ଟିହୀନତା ଯୋଗୁଁ ମୃତ୍ୟୁରେ ପଡ଼ନ୍ତି। ପ୍ରତ୍ୟେକ ପୁଷ୍ଟିକର ଖାଦ୍ୟ ନିର୍ଦ୍ଦିଷ୍ଟ ଭାବରେ ମଣିଷର ବିକାଶରେ ସହାୟକ ହୋଇଥାଏ।

**ପ୍ରୋଟିନ(ପୁଷ୍ଟିସାର) :** ପ୍ରୋଟିନ୍ ମାଂଶପେଶୀ ହାଡ଼, ଶିର, ଚର୍ମ ଏବଂ ରକ୍ତ ବୃଦ୍ଧିରେ ସାହାଯ୍ୟ କରେ। ପୁଷ୍ଟିସାର ଆମେ ସାଧାରଣତଃ ଡାଲି, କ୍ଷୀର, ଅଣ୍ଡା, ମାଛ ଏବଂ କୁକୁଡ଼ାରୁ ପାଇଥାଆନ୍ତି।

**ଶ୍ୱେତସାର - ଚର୍ବିଜାତୀୟ :** ଏହା ମଣିଷକୁ ଶକ୍ତି ଯୋଗାଇଥାଏ ଏବଂ ମଣିଷର ବିକାଶ ପ୍ରକ୍ରିୟାରେ ସାହାଯ୍ୟ କରିଥାଏ। ମିଠା ଜିନିଷରୁ ଶ୍ୱେତସାର ମିଳେ। ଗହମ, ଚାଉଳ, ମାଣ୍ଡିଆ ଏବଂ ବାଜ୍ରାରୁ ସାଧାରଣତଃ ଏହା ମିଳିଥାଏ।

**ମିନେରାଲସ୍ (ଖଣିଜ ପଦାର୍ଥ):** ଖଣିଜ ପଦାର୍ଥ ମଣିଷର ହାଡ଼ ଓ ଦାନ୍ତକୁ ମଜଭୁତ ରଖେ ଏବଂ ଏହା ଶାରୀରିକ ପ୍ରକ୍ରିୟାକୁ ନିୟନ୍ତ୍ରଣ କରେ। କ୍ଷୀର ଏବଂ କ୍ଷୀର ଜାତୀୟ ଉପାଦାନ ଏବଂ ପନିପରିବାରୁ ଏହା ପ୍ରଚୁର ପରିମାଣରେ ମିଳେ।

**ଭିଟାମିନ୍:** ଭିଟାମିନ୍ 'ଏ' ଖାଦ୍ୟ ଦୃଷ୍ଟିଶକ୍ତି ବୃଦ୍ଧି କରିବାରେ ସାହାଯ୍ୟ କରେ। ଏହା କମଳା ଏବଂ ସବୁଜ ପନିପରିବାରେ ମିଳେ।

**ଭିଟାମିନ୍ 'ବି':** ସାଧାରଣ ଭାବରେ ଏହା ଭୋକ ବଢ଼ାଏ ଏବଂ ହଜମ ପ୍ରକ୍ରିୟାକୁ ଠିକ୍ ଭାବରେ

ପରିଚାଳିତ କରେ । ଉଭୟ ଜିନିଷ ଶିଶୁର ଶାରୀରିକ ବିକାଶରେ ସାହାଯ୍ୟ କରେ । ସମସ୍ତ ପ୍ରକାର ଖାଦ୍ୟଶସ୍ୟ ଏବଂ ଡାଲିଜାତୀୟ ଜିନିଷରୁ ପ୍ରଚୁର ପରିମାଣରେ ଏହି ପୁଷ୍ଟିକର ଖାଦ୍ୟ ମିଳେ ।

**ଭିଟାମିନ୍ 'ସି' :** ଏହା ରୋଗ ପ୍ରତିରୋଧକ ଶକ୍ତି ବଢ଼େଇବାରେ ସାହାଯ୍ୟ କରେ ଏବଂ ପନିପରିବା, ଲେମ୍ବୁ ଓ କମଳା ଜାତୀୟ ଫଳରୁ ଏହା ମିଳିଥାଏ ।

**ଭିଟାମିନ୍ 'ଡ଼ି':** ଏହା କାଲ୍‌ସିୟମ୍ ମେଟାବଲିଜିମ୍ ପାଇଁ ସାହାଯ୍ୟ କରେ ଓ ଗାଢ଼ ସବୁଜ ପନିପରିବା ଏବଂ ମାଛରୁ ମିଳିଥାଏ । ସୂର୍ଯ୍ୟକିରଣରୁ ମଧ୍ୟ ଏହା ମିଳିଥାଏ ।

**ତନ୍ତୁ :** ଏହା ଖାଦ୍ୟ ହଜମ କରିବାରେ ଏବଂ ଝାଡ଼ା ସଫା କରିବାରେ ସାହାଯ୍ୟ କରିଥାଏ । ତନ୍ତୁ ଥିବା ପନିପରିବା, ଚୋପା ସହିତ ଖିଆଯାଉଥିବା ଫଳ ଯଥା: ପିଜୁଳି, ସେଓ, ନାସପାତି, କୋଳି ଆଦିରୁ ମିଳିଥାଏ । କେତେକ ପରିମାଣରେ ବାଜରା, ଗହମ ଏବଂ ମାଣ୍ଡିଆରୁ ମିଳିଥାଏ ।

**ପାଣି:** ପାଣି ଶରୀରର ପ୍ରତ୍ୟେକ କୋଷର ଅଂଶ ବିଶେଷ । ଏପରିକି ହାଡ଼ର ମଧ୍ୟ । ପିଲାର ଶିଶୁ ଅବସ୍ଥାରେ ପାଣିର ଆବଶ୍ୟକତା ଯଥେଷ୍ଟ ବେଶି । ଜଳ ଶରୀରରେ ସହଜରେ ମିଳେଇଯାଏ । ଶରୀରର ମଇଳା ପରିଷ୍କାର କରିବାରେ ଜଳ ସାହାଯ୍ୟ କରେ ।

ପିଲାଙ୍କୁ ପ୍ରତିଦିନ କ୍ଷୀର ବା କ୍ଷୀର ଜାତୀୟ ଉପାଦାନ, ସବୁଜ ଓ ହଳଦିଆ ପନିପରିବା, ପତ୍ର, ଖାଦ୍ୟଶସ୍ୟ, ଡାଲି, ଶାଗ, ଫଳ ଆଦି ଦେବା କଥା । ଯଦି ପିଲାର ଶରୀରରେ ଅଣ୍ଡା, ମାଛ, ମାଂସ ହଜମ କରିବାର ଶକ୍ତି ଅଛି ତେବେ ତାକୁ ମଧ୍ୟ ଦିଆଯିବା ଉଚିତ ।

ଭାରତର ମୁଖ୍ୟତଃ ଦାରିଦ୍ର୍ୟତା, ଅଶିକ୍ଷା, ସଚେତନତାର ଅଭାବ, ପରିବେଶ ଏବଂ ବ୍ୟକ୍ତିଗତ ସଫା ସୁତୁରା ଯୋଗୁଁ ପୁଷ୍ଟିହିନତା ଏବଂ ସ୍ୱାସ୍ଥ୍ୟର ଅବନତି ଦେଖାଯାଉଥାଏ । ଆମ ଦେଶରେ ଅଧିକାଂଶ ଲୋକ ପୁଷ୍ଟିହୀନତାର ଅଭାବରୁ ଜୀବନ ବିତାଉଛନ୍ତି । ସେମାନଙ୍କ ଭିତରେ ଜନ୍ମ ହେବାଠାରୁ ୬ ବର୍ଷ ବୟସ ପର୍ଯ୍ୟନ୍ତ ଶିଶୁ ଏବଂ ପିଲା ଛୋଟ ଥିବା ଅବସ୍ଥାରେ ମା' ମାନେ ।

ଏଣୁ ପିତାମାତାମାନେ ଉପରଲିଖିତ ଖାଦ୍ୟଗୁଡ଼ିକ ପିଲାମାନଙ୍କୁ ନିୟମିତ ଖାଇବାକୁ ଦେବାକଥା । ଗାଁ ଗହଳିରେ ସାଧାରଣତଃ ପନିପରିବା, ଖାଦ୍ୟଶସ୍ୟ, ମାଛ, ଅଣ୍ଡା, ଫଳମୂଳ ଅଳ୍ପ ବହୁତ ମିଳିଥାଏ । ପିଲାମାନଙ୍କୁ ସେସବୁ ଖାଇବାକୁ ଦେବା ଉଚିତ । ହୁଏତ ସେଓ ଆମେ ଖାଇବାକୁ ଦେଇ ନପାରୁ, କିନ୍ତୁ ସେଓ ବଦଳରେ ପିଜୁଳି, ବରକୋଳି, ଆଦି ପିଲାମାନଙ୍କୁ ଆମେ ଦେଇ ପାରିବା । ଖାଦ୍ୟ ପଦାର୍ଥକୁ ଛାଡ଼ିଦେଲେ ପିଲାମାନଙ୍କୁ ବିଭିନ୍ନ ସମୟରେ ଦିଆଯାଉଥିବା ଟିକା, ସଫା ପାଣି, ଏବଂ ସଫାସୁତୁରା ଘର ବାପା, ମା'ମାନେ ଯୋଗାଇ ଦେବା ଉଚିତ ।

# କେତୋଟି ଜାଣିବା କଥା (ଜନ୍ମଠାରୁ ଏକବର୍ଷ ଯାଏ)

(୧) ମା'ର କ୍ଷୀର ଶିଶୁପାଇଁ ସବୁଠାରୁ ଉତ୍ତମ ଅଟେ। ପିଲା ଜନ୍ମ ହେବାପରେ ମା' ସ୍ତନରୁ ନିର୍ଗତ ହେଉଥିବା ପ୍ରଥମ କ୍ଷୀର ଶିଶୁକୁ ଦେବା ଉଚିତ। ଏହା ପୁଷ୍ଟିକର ଏବଂ ପିଲାର ରୋଗ ପ୍ରତିରୋଧକ ଶକ୍ତି ବଢ଼ାଏ। ମା କ୍ଷୀର ଶିଶୁଟି ୬ ମାସ ପର୍ଯ୍ୟନ୍ତ ଖାଇବା ଉଚିତ। ଯଦି ଦରକାର ପଡ଼େ ଅଧିକ ସମୟ ମଧ୍ୟ ପିଲା ତା ମା'ଠାରୁ କ୍ଷୀର ଖାଇବା କଥା। ସେ ସମୟରେ ପିଲା ତା ମା'ଠାରୁ କ୍ଷୀର ଛାଡ଼ିବା ପାଇଁ ଅନ୍ୟାନ୍ୟ ଖାଦ୍ୟ ଅଭ୍ୟାସ କରାଇବା ଉଚିତ।

୨) ପିଲାଟି ୪ ମାସ ହେବାକ୍ଷଣି ପିଲାକୁ ଗାଈ କ୍ଷୀର, ପରିବା ଝୋଳ ଆଦି ଖାଇବାକୁ ଦିଆଯିବା ସହିତ ଆସ୍ତେ ଆସ୍ତେ ଖିଚିଡ଼ି, ପନିପରିବା ସିଝା ଖାଇବାକୁ ଦେବା ଉଚିତ।

୩) ପ୍ରକୃତିର ନିଜ ହାତ ପାଆନ୍ତାରେ ମିଳୁଥିବା ଖାଦ୍ୟ ପିଲାଙ୍କୁ ଦେବା ଉଚିତ।

୪) ପିଲାମାନଙ୍କୁ ବାଧ କରି ଖାଇବାକୁ ଦେବା ଉଚିତ ନୁହେଁ।

୫) ୮ ରୁ ୧୦ ବର୍ଷ ବୟସ ପିଲାମାନଙ୍କୁ ସେମାନେ ନିଜେ ଖାଇବା ପାଇଁ ପ୍ରବର୍ତ୍ତାଇବା କଥା, ସେ ତା ନିଜ ବାସନରେ ଖାଇବା ଉଚିତ।

ପିଲାମାନଙ୍କୁ ମିଠା, ମୃଦୁପାନୀୟ, ଚିପ୍ସ୍ ଆଦି ଖାଇବାଠାରୁ ବିରତ କରିବା ଉଚିତ। ଏଗୁଡ଼ିକ ଦାନ୍ତ ଖରାପ କରିବା ସଙ୍ଗେ ସଙ୍ଗେ ପିଲାର ଭୋକ ମାରିଦିଏ।

୪) ପିଲାମାନଙ୍କ ପୃଷ୍ଟିକର ଖାଦ୍ୟ ଓ ସଫାସୁତୁରା ବିଷୟରେ ପିଲାମାନଙ୍କୁ ବିଭିନ୍ନ ଗୀତ ଓ ଗଳ୍ପ ଦ୍ୱାରା ସଚେତନ କରାଇବା ଉଚିତ। ଗପଗୁଡ଼ିକ ଯଦି କଣ୍ଢେଇ ମାଧମରେ କରାଯାଏ, ତେବେ ଏହା ପିଲାର ଆଗ୍ରହକୁ ଅଧିକ ପରିମାଣରେ ବଢ଼େଇବ।

୫) ପିଲାମାନଙ୍କୁ ବଣଭୋଜୀରେ ସାମିଲ କରାଯିବା ଉଚିତ୍।

୬) ପିଲାମାନଙ୍କର ସ୍ୱାସ୍ଥ୍ୟର ଉନ୍ନତି ପାଇଁ ବିଭିନ୍ନ୍ ପ୍ରକାରର ଖେଳ ସେମାନଙ୍କ ପାଇଁ ଅପରିହାର୍ଯ୍ୟ ଅଟେ।

୭) ପିଲାଙ୍କୁ ନୂଆ ନୂଆ ଖାଦ୍ୟ ଖୁଆଇବା କଥା। ଏହା ଦ୍ୱାରା ପିଲାର ସବୁପ୍ରକାର ଖାଦ୍ୟ ପ୍ରତି ଆଗ୍ରହ ଜନ୍ମିବ।

୭) ଖାଦ୍ୟ ପଦାର୍ଥର ସଫାସୁତୁରା ଏବଂ ପରିଚ୍ଛନ୍ନତା ପ୍ରତି ଗୁରୁତ୍ୱ ଦେବା ଉଚିତ୍।

୮) ପିଲାମାନଙ୍କୁ ଠିକ୍ ସମୟରେ ଟିକା ଦେବାର ବ୍ୟବସ୍ଥା ହେବା ଉଚିତ୍ ।

୯) ପିଲାର ପୁଷ୍ଟିସାର ଖାଦ୍ୟ ବିଷୟରେ ସଚେତନତା ଏବଂ ସ୍ୱାସ୍ଥ୍ୟ ନିୟମିତ ପରୀକ୍ଷା ଦେବା ଉଚିତ । ସେମାନଙ୍କର ଉଚ୍ଚତା, ଓଜନ, ମପା ହୋଇ ପିଲାର ବିକାଶ ପ୍ରକ୍ରିୟାକୁ ଜାଣିବା ଉଚିତ୍ ।

୧୦) ୧ ବର୍ଷରୁ ୩ ବର୍ଷ ପିଲା ଏବଂ ୩ ବର୍ଷରୁ ୬ ବର୍ଷ (ବାଲବାଡ଼ି କେନ୍ଦ୍ରରେ ଥିବା ସମୟରେ) ନିମ୍ନଲିଖିତ ଦିଗପ୍ରତି ପିତାମାତା ଏବଂ ଶିକ୍ଷକ ଧ୍ୟାନ ଦେବା ଉଚିତ୍ ।

(୧) ପିଲାମାନଙ୍କର ଖାଦ୍ୟପ୍ରତି ଧାନ ଦେବା ଉଚିତ । କ୍ଷୀର, ପନିପରିବା, ବିଭିନ୍ନ ପ୍ରକାର ସାକସବଜୀରେ ପ୍ରସ୍ତୁତ କରି ପିଲାମାନଙ୍କୁ ଖାଇବାକୁ ଦେବା ଉଚିତ୍ । ଦହି, ମହି, ଛେନା, ପରିବା ତରକାରୀ, ଖେଚିଡ଼ି, ମାଣ୍ଡିଆ ଆଦି ପ୍ରସ୍ତୁତ କରି ପିଲାମାନଙ୍କୁ ଖାଇବାକୁ ଦେବା ଉଚିତ୍ ।

(୨) ପିଲାମାନେ କେତେ ପରିମାଣରେ ଖାଦ୍ୟ ଖାଇବେ ବଡ଼ମାନେ ସେମାନଙ୍କୁ ବାଧ କରାଇବା ଉଚିତ୍ ନୁହେଁ ।



# ବିଜ୍ଞାନ ଶିକ୍ଷା

ବିଜ୍ଞାନକୁ କେହି କେହି ବିଶେଷ ଜ୍ଞାନ କହୁଛନ୍ତି । ଆଉ କିଏ ଯାହା ସତ୍ୟ ତାହା ବିଜ୍ଞାନ ବୋଲି ମଧ କହୁଛନ୍ତି । ପ୍ରକୃତରେ ଆମେ ବିଜ୍ଞାନ କାହାକୁ କହିବା ? ବିଜ୍ଞାନ କୌତୁହଳରୁ ଜାତ । ମଣିଷ ବଣ ଜଙ୍ଗଲରେ ବୁଲୁଥିଲା । ଗଛର ବକଳ ପିନ୍ଧିଲା, ନିଆଁ , ଲୁହାର, ପଥରର ବ୍ୟବହାର କ୍ରମଶଃ ଜାଣିପାରିଲା । ନିଜର ଭାବକୁ ବିଭିନ୍ନ ଅଙ୍ଗଭଙ୍ଗୀ ମାଧ୍ୟମରେ ପ୍ରକାଶ କରିବାରେ ସମର୍ଥ ହେଲା । ପ୍ରତ୍ୟେକ ଜିନିଷକୁ ପର୍ଯ୍ୟବେକ୍ଷଣ, ଆବିଷ୍କାର, କଳ୍ପନା, ପରିକ୍ଷଣ ଓ ନିରିକ୍ଷଣ ମାଧମରେ ଅନେକ କଥା ଜାଣିଲା । ପ୍ରଥମେ ପ୍ରଥମେ ରୋଗ ଓ ପ୍ରାକୃତିକ ଦୁର୍ବିପାକ ହେଲେ ସବୁ ଭଗବାନ କରୁଛନ୍ତି ବୋଲି ବିଶ୍ୱାସ କରୁଥିଲେ । କାଳକ୍ରମେ ସବୁ ଜିନିଷର କାରଣ ଖୋଜିବାରେ ଲାଗିଲା । କୌଣସି ଜିନିଷକୁ ଅନ୍ଧଭାବରେ ଗ୍ରହଣ କରିବାକୁ ଅସ୍ୱୀକାର କଲା । ସେହିଠାରୁ ହିଁ ବୈଜ୍ଞାନିକ ପ୍ରକ୍ରିୟା ଆରମ୍ଭ ହେଲା । ଏଣୁ ବିଜ୍ଞାନ ଅର୍ଥ ଆମେ ମୋଟା ମୋଟି ଭାବରେ କାରଣ ଖୋଜିବା ବୋଲି କହିବା । ବିଜ୍ଞାନର ଆରମ୍ଭ ଏପରି ଭାବରେ ଘଟିଲା ।

ବାଲବାଡ଼ି କେନ୍ଦ୍ରରେ ବିଜ୍ଞାନ ବିଷୟରେ ପାଠ ପଢ଼ାହେବ ନାହିଁ । କିନ୍ତୁ ଶିକ୍ଷକମାନେ ବିଜ୍ଞାନ କଣ ନିଜେ ଜାଣିବେ । ଏ ସମ୍ବନ୍ଧରେ 'ବିଜ୍ଞାନ କ'ଣ' ଗପରୁ ଶିକ୍ଷକମାନେ ବିଜ୍ଞାନ ବିଷୟରେ ଜାଣି ପାରିବେ । ପିଲାମାନଙ୍କର ହାତ,ଗୋଡ଼, ମନର ଚାଳନା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନେବା ଉଚିତ । ମାଟି କଣ୍ଢେଇ ତିଆରି, କାଗଜରେ ବିଭିନ୍ନ ଆକୃତିର ଜିନିଷ ପିଲାମାନେ ତିଆରି କରିବେ । ଏହାଦ୍ୱାରା ପିଲାମାନଙ୍କର :

(୧) ହାତ, ଆଖି ଓ ମସ୍ତିଷ୍କ ମଧରେ ସମନ୍ୱୟ ରହିବା ।

(୨) ଏକାଗ୍ରତା ବୃଦ୍ଧି ପାଇବ ।

(୩) ସମସ୍ତେ ଏଥିରୁ ସିଧାସଳଖ ମଜା ପାଇପାରିବେ ।

(୪) ସହାୟକ/ସହାୟିକା ଏହାକୁ ପିଲାମାନଙ୍କ ସହିତ କାର୍ଯ୍ୟ କରିବା ପାଇଁ ଏକ ମାଧମ ରୂପେ ବ୍ୟବହାର କରିପାରିବେ ।

(୫) ପରିବାରର ସମସ୍ତ ସଦସ୍ୟ ମିଳିତ ଭାବେ ଏହି କାର୍ଯ୍ୟ କରିବାଦ୍ୱାରା ପରସ୍ପର ମଧରେ ସମ୍ପର୍କ ନିବିଡ଼ ହୋଇପାରିବ ।

ବିଜ୍ଞାନ ଶିକ୍ଷାର ମୂଳ ଉଦ୍ଦେଶ୍ୟ ପିଲାମାନଙ୍କ ଭିତରେ ବୈଜ୍ଞାନିକ ମନୋଭାବ ଜାଗ୍ରତ କରାଇବା । ପିଲାମାନେ କୌଣସି ଜିନିଷକୁ ସହଜରେ ଗ୍ରହଣ କରିବେ ନାହିଁ । ସବୁ ଜିନିଷର କାରଣ ଖୋଜିବେ, ପରୀକ୍ଷା ନିରୀକ୍ଷା କରିବେ । ଆମ ସମାଜରେ ସାଧାରଣତଃ ବଡ଼ଲୋକମାନେ ଯାହା କହନ୍ତି ତାହାକୁ ସାନମାନେ ଗ୍ରହଣ କରି ନିଅନ୍ତି । ପିଲାମାନେ ବଡ଼ମାନଙ୍କୁ ଅପମାନିତ କରାଇବେ ନାହିଁ କିନ୍ତୁ ବଡ଼ ବୋଲି

ଯେ ସବୁ ଜିନିଷ ଠିକ୍ କହୁଛି ଏଭଳି ମନୋଭାବ ପୋଷଣ କରିବେ। ଏଭଳି ମନୋଭାବ ପିଲାମାନଙ୍କର ଆସିବାକୁ ହେଲେ, ପିଲାମାନଙ୍କର ଭୟ ଦୂର କରିବା ଦରକାର ଏବଂ ସେମାନଙ୍କର କାମରେ ସ୍ୱାଧୀନତା ଦରକାର। ଏଣୁ ଶିକ୍ଷକମାନେ ଏଥିପ୍ରତି ସଜାଗ ରହିବା ଦରକାର। ଭୟ ହେଉଛି ଆମର ଶତ୍ରୁ। ଭୟ ହେତୁ ପିଲାମାନେ ଶିକ୍ଷକଙ୍କୁ କୌଣସି ବିଷୟରେ ବୁଝିନଥିଲେ ମଧ୍ୟ ଶିକ୍ଷକଙ୍କୁ ପଚାରି ବୁଝନ୍ତି ନାହିଁ। ଏଣୁ ବିଜ୍ଞାନ ଶିକ୍ଷା ଏବଂ ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ପିଲାମାନଙ୍କର ଜାଣିବାର ଇଚ୍ଛା ବଢ଼ିବ।

## ବିଜ୍ଞାନ କ'ଣ ?

ଜଣେ ରାଜା ଥିଲେ। ତାଙ୍କର ଗୋଟିଏ ବୋଲି ପୁଅ ଥିଲା। ରାଜା ତାଙ୍କ ପୁଅକୁ ବହୁତ ଭଲପାଉଥିଲେ। ରାଜମହଲରେ ଅମାପ ଧନ ଥିଲା। ଅନେକ ଦାସଦାସୀ ଥିଲେ। କେଉଁଠି କିଛି ଅଭାବ ନଥିଲା। ତେବେ ବି ଅନେକ ସମୟରେ ରାଜା ଉଦାସ ରହୁଥିଲେ। ଏହାର କାରଣ ଥିଲେ ରାଜକୁମାର। ରାଜକୁମାର ଅନେକ ଅଜବ ପ୍ରଶ୍ନ ପଚାରୁଥିଲେ। ଚଢ଼େଇ କେମିତି ଉଡୁଛି ? ସବୁ ଜିନିଷ ତଳକୁ କାହିଁକି ପଡୁଛି ? ଏମିତି କେତେ କ'ଣ ? ରାଜାଙ୍କୁ ଏସବୁର ଉତ୍ତର ଜଣା ନଥିଲା। ତେଣୁ ସେ ବହୁତ ବ୍ୟସ୍ତହୋଇ ପଡୁଥିଲେ। ବେଳେ ବେଳେ ଚିଡ଼ି ବି ଯାଉଥିଲେ। ତେଣୁ ରାଜକୁମାର ଡରରେ ରାଜାଙ୍କଠାରୁ ଦୂରରେ ରହିବାକୁ ଆରମ୍ଭ କଲେ। ସେଥିପାଇଁ ରାଜା ମନ ଦୁଃଖରେ ଥିଲେ।

ଦିନେ ରାଜା ତାଙ୍କର ସବୁଠାରୁ ବୁଦ୍ଧିଆ ମନ୍ତ୍ରୀଙ୍କୁ ଡାକିଲେ। ରାଜା କହିଲେ ''ମନ୍ତ୍ରୀ, ରାଜକୁମାର ଅନେକ ପ୍ରଶ୍ନ ପଚାରୁଛି, ଯାହାରକି ଉତ୍ତର ମୋ ପାଖରେ ନାହିଁ। ମୋ ମନରେ ମଧ୍ୟ ଅନେକ ପ୍ରଶ୍ନ ଉଠୁଛି। ଶୁଣୁଛି ବିଜ୍ଞାନ ଜରିଆରେ ଏସବୁ ପ୍ରଶ୍ନର ଉତ୍ତର ମିଳି ପାରିବ। ଆପଣ ତ ବୁଦ୍ଧିମାନ, ପୁଣି ପଣ୍ଡିତ। କୁହନ୍ତୁ ତ, ଏ ବିଜ୍ଞାନ କ'ଣ ?

ରାଜାଙ୍କ କଥା ଶୁଣି ମନ୍ତ୍ରୀ ମହା ଅଡୁଆରେ ପଡ଼ିଗଲେ। ବିଜ୍ଞାନ ବିଷୟରେ ସେ ମୋଟାମୋଟି କିଛି ଜାଣିଥିଲେ। ହେଲେ ''ବିଜ୍ଞାନ କ'ଣ'' ଏ ବିଷୟରେ କେବେ ଭାବି ନଥିଲେ। ଏଣେ ରାଜାଙ୍କୁ ବିଜ୍ଞାନର ବ ଅକ୍ଷର ଜଣାନାହିଁ। ତାଙ୍କ ଭଳି ଲୋକଙ୍କୁ ପୁଣି କିଏ କିପରି ବୁଝାଇବ ଯେ ବିଜ୍ଞାନ କ'ଣ ?

ସାତଦିନ ସାତରାତି ଧରି ମନ୍ତ୍ରୀ ବେଶ୍ ଚିନ୍ତାକଲେ। ଶେଷରେ ରାଜାଙ୍କୁ କହିଲେ ''ମହାରାଜ, ଆପଣଙ୍କ ପ୍ରଶ୍ନ ଅତି ଜଟିଳ। ଏହାର ଉତ୍ତର ଜାଣିବା ଆଗରୁ ଦେଖିବା ଆପଣଙ୍କର ପ୍ରଶ୍ନ ଓ ରାଜକୁମାରଙ୍କ ପ୍ରଶ୍ନ ସବୁ ଆସୁଛି କେଉଁଠୁ ? ଆମ ଚାରିପାଖର ଦୁନିଆକୁ ନେଇ ଏ ପ୍ରଶ୍ନ ସବୁ ଗଢ଼ା। ଏ ଦୁନିଆକୁ ବୁଝିବାର ଆଗ୍ରହରୁ ଆମ ମନରେ ଏ ପ୍ରଶ୍ନ ସବୁ ଉଠେ। ମହାରାଜ, ବିଜ୍ଞାନର ଆରମ୍ଭ ହୁଏ ଏଇ ଜିଜ୍ଞାସାରୁ। ଆମର କୌତୁହଳ ବା ଜିଜ୍ଞାସା ଏକ ପ୍ରଶ୍ନର ରୂପ ନିଏ। ପ୍ରଶ୍ନଟିଏ ସମାଧାନ କରିବାର ବାଟ କଢ଼ାଏ ବିଜ୍ଞାନ। ବିଜ୍ଞାନ ଆମ ଚାରିପଟର ଦୁନିଆକୁ ବୁଝିବାରେ ଆମକୁ ସାହାଯ୍ୟ କରେ।

ରାଜା କହିଲେ ''ମନ୍ତ୍ରୀ, ଏ କଥା ତ ଠିକ୍ ଲାଗୁଛି । ତେବେ ବିଜ୍ଞାନ ଏ ସବୁର ସମାଧାନ କେମିତି କରେ ?''

ମନ୍ତ୍ରୀ କହିଲେ '' ଏକଥା ଜାଣିବା ପାଇଁ ଆମକୁ ବିଜ୍ଞାନୀମାନଙ୍କର କାମକୁ ବୁଝିବାକୁ ପଡ଼ିବ । କିଛି ଘଟଣା ବା ଜିନିଷକୁ ନିରୀକ୍ଷଣ କରି ସେମାନେ କିଛି ତଥ୍ୟ ଏକାଠି କରନ୍ତି । ଏହି ତଥ୍ୟ ସବୁକୁ ଯୋଡ଼ି ମନେ ମନେ ମୋଟା ମୋଟି ଛବିଟିଏ ଗଢ଼ି ନିଅନ୍ତି । ବେଳେ ବେଳେ ଯେତିକି ତଥ୍ୟ ମିଳିଥାଏ ତାହା ମନର ଛବି ପାଇଁ ଯଥେଷ୍ଟ ହୁଏନି । ତେଣୁ ସେ ବିଜ୍ଞାନୀ କିଛି ପରଖ କରେ । ସମସ୍ୟା ବିଷୟରେ ଅଧିକ ତଥ୍ୟ ଖୋଜେ । ଠିକ୍ ଉତ୍ତର ମିଳିଲା ଯାଏଁ ଏ କଥା ସେ ଚାଲୁ ରଖେ ।''

ରାଜା କହିଲେ ''ମୁଁ ଆପଣଙ୍କ କଥା ପୂରାପୂରି ବୁଝି ପାରିଲିନି । ଗୋଟିଏ ସାଦାସିଦା ଉଦାହରଣ ଦେଇ ବୁଝାଇ ଦିଅନ୍ତୁ ତ !''

ମନ୍ତ୍ରୀ କହିଲେ ''ମହାରାଜ ଦେଖନ୍ତୁ, ରାଜକୁମାରଙ୍କର ଗୋଟିଏ ପ୍ରଶ୍ନ ଥିଲା ସବୁ ଜିନିଷ କାହିଁକି ତଳକୁ ପଡ଼େ । ଆମ ଦେଖିବାରେ ସବୁ ଜିନିଷ ତଳକୁ ହିଁ ପଡ଼େ । ଏହା କ'ଣ ସବୁ ଜାଗାରେ ସବୁ ଜିନିଷ ପାଇଁ ଠିକ୍ ? ଏକଥା ଜାଣିବା ପାଇଁ ଆମକୁ କେତେ ଜିନିଷ ନେବାକୁ ହେବ । କେତେ ଯାଗାରେ ପରୀକ୍ଷା କରିବାକୁ ହେବ । ଏମିତି କଲେ ଆମେ ଦେଖିବା ଯେ ପଥର, ପଇସା, ଛୁଞ୍ଚି, କନା, କାଗଜ ସବୁକିଛି ତଳକୁ ହିଁ ପଡ଼ିବ । ଅନେକ ବର୍ଷ ତଳେ ଜଣେ ବୈଜ୍ଞାନିକ ଏହାର କାରଣ ଖୋଜି ପାଇଥିଲେ ।''

ରାଜାଙ୍କର ମନ ଖୁବ୍ ଲାଗି ଯାଇଥିଲା । ସେ ପଚାରିଲେ ''ଉତ୍ତରଟା କ'ଣ ?''

ମନ୍ତ୍ରୀ କହିଲେ ''ଉତ୍ତର ତ ସିଧା କଥା । ପୃଥିବୀ ଟାଣିବା ଫଳରେ ସବୁ ଜିନିଷ ତଳେ ପଡ଼େ ।''

ରାଜା ଖୁବ୍ ଖୁସିହୋଇ କହିଲେ ''ଆରେ, ଏ ତ ଅତି ସହଜ । କେଜାଣି କେମିତି ମୁଁ ଭାବି ପାରି ନଥିଲି ।''

ମନ୍ତ୍ରୀ କହିଲେ ''ମହାରାଜ, ଜାଣିଗଲା ପରେ ଏପରି ଅନେକ ଉତ୍ତର ବହୁତ ସାଧାରଣ ଲାଗେ । କିନ୍ତୁ ଉତ୍ତର ଖୋଜିବାଟା ସବୁବେଳେ ଏତେ ସହଜ ନୁହେଁ । ପକ୍କା ଉତ୍ତର ପାଇବା ଆଗରୁ ପରୀକ୍ଷା ନିରୀକ୍ଷା କରିବା ପାଇଁ ହୁଏ । ଉତ୍ତର ଖୋଜୁ ଖୋଜୁ ବେଳେ ବେଳେ ବୈଜ୍ଞାନିକଙ୍କ ଜୀବନ ମଧ୍ୟ ବିତିଯାଏ ।''

ଏବେ ରାଜା ବିଜ୍ଞାନ ବିଷୟରେ କିଛି କିଛି ବୁଝିଲେଣି । ତେଣୁ ତାଙ୍କର ଝୁଙ୍କ ବହୁତ ବଢ଼ିଯାଇ ଥାଏ । ପରଦିନ ରାଜା ମନ୍ତ୍ରୀଙ୍କୁ କହିଲେ, ''ଆପଣ ବିଜ୍ଞାନ ବିଷୟରେ ଯାହା କହିଲେ ତା' ଶୁଣି ମୁଁ ବହୁତ ଖୁସି । ଯଦି ଆପଣ କିଛି ପରୀକ୍ଷାଦ୍ୱାରା ବୁଝାଇ ପାରିବେ ତେବେ ମୋର ସବୁ ସନ୍ଦେହ ତୁଟିଯା'ନ୍ତା । ମୁଁ ଚାହୁଁଛି ଏସବୁ ପରୀକ୍ଷାରେ ନିଜେ ଭାଗ ନିଅନ୍ତି ।''

ଏବେ ମନ୍ତ୍ରୀ ଦେଖିଲେ ସମସ୍ୟା ବଢ଼ିଲାଣି । କିନ୍ତୁ ସେ ଜଣେ ବେଶ୍ ବୁଦ୍ଧିଆ ମନ୍ତ୍ରୀ ଥିଲେ । ତେଣୁ ୨-୩ ଦିନ ପରେ ଗୋଟିଏ ହାତୀ ଓ ତିନିଜଣ ଅନ୍ଧକୁ ନେଇ ଆସିଲେ । ଦରବାରରେ ରାଜା, ରାଜକୁମାର ଓ ମହଲବାସୀ ସମସ୍ତେ ଆସି ଜମାହେଲେ ।

ମନ୍ତ୍ରୀ କହିଲେ "ମହାରାଜ, ଆମର ପରଖ ଏବେ ପ୍ରସ୍ତୁତ ।" ରାଜା କହିଲେ "ମନ୍ତ୍ରୀ, କ'ଣ ଥଟ୍ଟା ଖେଳୁଛ ? ବିଜ୍ଞାନ ସହ ହାତୀ ଓ ଅନ୍ଧଙ୍କର ସମ୍ପର୍କ କ'ଣ ?"

ମନ୍ତ୍ରୀ କହିଲେ "ମହାରାଜ, ମୁଁ ଥଟ୍ଟା କରୁନି । ଏହି ଅନ୍ଧଲୋକମାନଙ୍କୁ ଜଣାନାହିଁ ଯେ ଏଠି ହାତୀ ଅଛି । ଏବେ ଦେଖନ୍ତୁ କ'ଣ ହେଉଛି ।"

ପ୍ରଥମ ଅନ୍ଧ ଅଣ୍ଡାଳି ଅଣ୍ଡାଳି ହାତୀର ଲାଞ୍ଜକୁ ଛୁଇଁଲା । କହିଲା ଯେ ଏଠାରେ ଦଉଡ଼ି ପରି ଏକ ଜିନିଷ ଅଛି । ଦ୍ୱିତୀୟ ଅନ୍ଧ ହାତୀର ଶୁଣ୍ଢକୁ ଛୁଇଁ କହିଲା ଯେ ଜିନିଷଟି ସାପପରି । ତୃତୀୟ ଅନ୍ଧ ହାତୀର ଗୋଡ଼ ଛୁଇଁ କହିଲା ଯେ ଏହା ଗଛର ଗଣ୍ଡିପରି ।

ଏମାନଙ୍କ କଥାଶୁଣି ସମସ୍ତେ ହସିଲେ । ଅନ୍ଧମାନେ ହସ ଶୁଣି ଟିକେ ଦବିଗଲେ । ମନ୍ତ୍ରୀ ସମସ୍ତଙ୍କୁ ଚୁପ୍ କରାଇଲେ । ସମସ୍ତେ ଅନାଇ ରହିଲେ ମନ୍ତ୍ରୀ କ'ଣ କରୁଛନ୍ତି ଦେଖିବା ପାଇଁ ।

ମନ୍ତ୍ରୀ କହିଲେ "ଆମେ ଦେଖିଲେ ଯେ ଗୋଟିଏ ଜନ୍ତୁ ବିଷୟରେ କିପରି ଅଲଗା ଅଲଗା ପୁଣି ଓଲଟ ପାଲଟ ତଥ୍ୟ ମିଳିଲା । ଏବେ ଆମେ ସେମାନଙ୍କୁ ମିଳି ମିଶି ପରୀକ୍ଷା କରିବା ପାଇଁ କହିବା ।" ମନ୍ତ୍ରୀ ସେମାନଙ୍କୁ ଆଦେଶ ଦେଲେ ।

ଅନ୍ଧମାନେ ନିଜ ନିଜ ଭିତରେ ଆଲୋଚନା କଲେ । ଭାବିଲେ ଏଇଟା କିପରି ଜିନିଷ ଯାହାକି କିଛି ପରିମାଣରେ ଦଉଡ଼ି, ସାପ ଓ ଗଛର ଗଣ୍ଡି ପରି । ଅନେକ ସମୟ ଆଲୋଚନା କଲାପରେ ମଧ୍ୟ କିଛି ଫଇସଲା କରି ପାରିଲେନି । ତେଣୁ ସେମାନେ ଆଉଥରେ ତାକୁ ଦେଖିବା ପାଇଁ ଠିକ୍‌କଲେ । ସେମାନେ ଠିକ୍‌କଲେ ଯେ ଏଥର ତା'ବିଷୟରେ କିଛି ଅଧିକ ଖୋଳତାଡ଼ କରିବେ । ଅନେକ ସମୟ ଧରି ସେମାନେ ଜିନିଷଟି ଉପରେ ହାତ ବୁଲାଇଲେ । ନିଜ ନିଜର ଅନୁଭୂତି ଅନ୍ୟକୁ ଶୁଣାଉଥା'ନ୍ତି ।

ପ୍ରଥମ ଅନ୍ଧ କହିଲା "ସାପ ପରି ଯେଉଁ ଜିନିଷଟା ତାହା ଉପରକୁ ଯାଇଛି ଓ ମୁଣ୍ଡ ପରି ଗୋଟିଏ ବଡ଼ ଜିନିଷରେ ମିଶିଛି ।" ସେ ହଠାତ୍ ହାତ କାଢ଼ି ଆଣିଲା । କହିଲା "ଆରେ ଏ ତ ପାଟି ପରି, ରକ୍ଷା ହୋଇଛି ହାତ କାଢ଼ି ଆଣିଛି, ନ ହେଲେ କାମୁଡ଼ି ଦେଇଥାନ୍ତା । ଏବେ ବୁଝୁଛି ଏଇ ସାପ ପରି ଜିନିଷଟା ଗୋଟେ ନାକ ହୋଇପାରେ ।

ଦ୍ୱିତୀୟ ଅନ୍ଧ କହିଲା "ଦଉଡ଼ି ପରି ଜିନିଷଟା ଅତି ବଡ଼ ନୁହେଁ । ଏହା ଗୋଟିଏ ଅତି ବଡ଼ ଜିନିଷରୁ ଝୁଲୁଛି । ମୂଳ ଜିନିଷଟି ଏତେ ବଡ଼ ଯେ ଦୁଇ ହାତରେ ଧରି ହେଉନି । ମୁଁ ବୁଝି ପାରୁନି ଏଇ ଦଉଡ଼ି ପରି ଜିନିଷଟା କ'ଣ ?"

ତୃତୀୟ ଅନ୍ଧ କହିଲା "ମୋ ହାତରେ ଥିବା ଜିନିଷଟି ଗଛର ଗଣ୍ଡୀ ହୋଇ ନପାରେ । କାରଣ ଏଥିରେ ଡାଳ ପତ୍ର କିଛି ନାହିଁ । ଉପରକୁ ଯାଇ ଏଇ ଗଣ୍ଡି ଭଳି ଜିନିଷଟି ଗୋଟିଏ ନରମ ଦେହ ସହ ଲାଗିଛି । ଆରେ, ଏଇଟା ତ କ'ଣ ମନକୁ ମନ ଚାଲିବା ପାଇଁ ଲାଗିଲାଣି ! ଆଚ୍ଛା ! ଏବେ ମୁଁ ବୁଝିଲି ଏଇଟା ଗୋଟେ ଗୋଡ଼" ।

ତା'ପରେ ତିନିଜଣ ଯାକ ମିଶି ବିଚାରକଲେ । ଶେଷରେ କହିଲେ ''ମହାରାଜ ଏବେ ଯେଉଁ ଜିନିଷଟି ଉପରେ ଆମେ ପରୀକ୍ଷା କଲୁ ବୋଧହୁଏ ତାହା ଗୋଟିଏ ବହୁତ ବଡ଼ ଜନ୍ତୁ । ଯାହାର ନାକ ଏତେ ଲମ୍ବା ଯେ ମାଟି ଛୁଉଁଛି, ଗୋଡ଼ଗୁଡ଼ିକ ବହୁତ ମୋଟା, ଦେହଟା ବହୁତ ବଡ଼ । ଆମଠାରୁ ସେ ବହୁତ ଉଞ୍ଚା, ତେଣୁ ଆମେ ତା'ର ଉପର ଅଂଶଟି ପରୀକ୍ଷା କରିପାରିଲୁ ନାହିଁ । ତା ପଛପଟେ ଦଉଡ଼ି ପରି କିଛି ଅଛି । ଏଇଟା ତା'ର ଲାଞ୍ଜ ହୋଇପାରେ । କିନ୍ତୁ ଆମେ ନିଶ୍ଚିତ ନୋହୁଁ । ଆମେ ଅନ୍ଦାଜ କରି କହୁଛୁ ଯେ ଏହି ଜନ୍ତୁଟି ହାତୀ ବା ସେପରି କିଛି ଜନ୍ତୁ । ଆମେ ଜନ୍ମରୁ ଅନ୍ଧ । ତେଣୁ ହାତୀ ବିଷୟରେ ଯାହା ଶୁଣିଛୁ ସେଇ ଅନୁସାରେ ହିଁ କେବଳ କହୁଛୁ ।''

ମନ୍ତ୍ରୀ କହିଲେ ''ମହାରାଜ, ଏବେ ଆମର ପରୀକ୍ଷା ଶେଷହେଲା । ମୁଁ ଆଶା କରୁଛି ଯେ ଏଥିରୁ ବିଜ୍ଞାନର ଧାରା ବିଷୟରେ ଆପଣ ବେଶ୍ କିଛି ବୁଝି ପାରିଥିବେ ।''

ରାଜା ବଶେ଼ ଖୁସି ଜଣାପଡୁଥିଲେ । ତାଙ୍କ ମୁହଁରେ ଉତ୍ସାହର ନୂଆ ଚମକ ଝଟକ ଥିଲା । ସେ କହିଲେ ''ଆପଣ ଖୁବ୍ ସରଳ ଭାବରେ ବିଜ୍ଞାନ ବିଷୟରେ ବୁଝାଇ ଦେଲେ । ପ୍ରକୃତରେ ତାହା ପ୍ରଶଂସାଯୋଗ୍ୟ । ତେବେ ବି ସମସ୍ତଙ୍କ ପାଇଁ ଆପଣ ଆଉ ଟିକିଏ ବୁଝାଇ କୁହନ୍ତୁ ।''

ମନ୍ତ୍ରୀ କହିଲେ ''ଏହି ପରୀକ୍ଷାର ସାର କଥା ଏହିଭଳି । ଅନ୍ଧ ତିନିଜଣ ଠିକ୍ ବୈଜ୍ଞାନିକମାନଙ୍କ ଧାରା ଅନୁସରଣ କଲେ । ପ୍ରତି ଅନ୍ଧ କିଛି ତଥ୍ୟ ପାଉଥିଲେ । ତାକୁ ଏକାଠି କରି ତାଙ୍କ ମନରେ ଗୋଟିଏ ଛବି ସେ ତିଆରି କଲେ । ସେମାନେ ଅନ୍ଧ ଥିଲେ । ତେଣୁ ସେମାନଙ୍କର ତଥ୍ୟ ସୀମିତ ଥିଲା । ଫଳରେ ତାଙ୍କର ମନର ଛବିଟି ଠିକ୍ ନଥବଲା ।

ଦ୍ୱିତୀୟ ଥର ପରଖ କଲା ବେଳେ ସେମାନେ ନିଜ ନିଜର ଅନୁଭୂତିକୁ ମିଶାଇ ଦେଖିଲେ । ନିଜେ ଯାହା ଜାଣିଲେ ତାକୁ ଅନ୍ୟର କଥା ସାଙ୍ଗେ ତୁଳନା କଲେ । ଅନ୍ୟର ମତାମତ ମଧ୍ୟ ନେଲେ । ଏହି-ଭାବରେ ଜନ୍ତୁଟିର ଗୋଟିଏ ମୋଟାମୋଟି ଚିତ୍ର ବାହାରିଲା । ଏହି ଚିତ୍ରଟି ସଭିଙ୍କର ତଥ୍ୟ ସାଙ୍ଗେ ମେଳ ଖାଇଲା । ହାତୀ ବିଷୟରେ ସେମାନେ ଆଗରୁ କିଛି ଶୁଣିଥିଲେ । ସେହି ଶୁଣାକଥା ସାଙ୍ଗରେ ଏବେକାର ପରୀକ୍ଷା ଫଳ ଖାପ ଖାଇଗଲା । ତେଣୁ ସେମାନେ ଠିକ୍‌କଲେ ଯେ ତାଙ୍କ ହାତରେ ଥିବା ଜିନିଷଟି ଗୋଟିଏ ହାତୀ ।''

ଅଜଣା କଥାକୁ ବୁଝିବା ବିଜ୍ଞାନର କାମ । ଜଣାଶୁଣା ତଥ୍ୟକୁ ନେଇ ଗୋଟିଏ ଚିତ୍ର ଗଢ଼ିବା ଆଉ ପରୀକ୍ଷା କରି ସେହି ଅନ୍ଦାଜକୁ ପ୍ରମାଣିତ କରିବା ହେଉଛି ବିଜ୍ଞାନର ଧାରା ।

( ବିଜ୍ଞାନ ଯଦି ଗୋଟିଏ ବିରାଟ ଗଛ ହୁଏ, ତେବେ ପ୍ରଶ୍ନଟିଏ ହେବ ତାର ମଞ୍ଜି ଓ କୌତୁହଳୀ ହେବ ତା'ର ଖାଦ୍ୟସାର ।)

*ସୌଜନ୍ୟ : ବିଜ୍ଞାନ କ'ଣ ? , ସୃଜନୀକା, ଭୁବନେଶ୍ୱର ।*

# ମାନସିକ ବିକାଶ ଲାଗି ଶିଶୁଶିକ୍ଷା

ବାଲ୍ୟାବସ୍ଥାରେ ପ୍ରଥମ ପାଞ୍ଚ ସାତ ବର୍ଷ ଭିତରେ ପିଲାମାନଙ୍କର ଯାହା ଶିକ୍ଷା ହୁଏ, ତାର ପର ଜୀବନରେ ମନରୁ ସହଜରେ ଲିଭି ପାରେନାହିଁ। ଅନେକ ମନସ୍ତାତ୍ତ୍ୱିକଙ୍କ ମତରେ ଶିଶୁମାନଙ୍କର ଚରିତ୍ର ଗଠନର ମୂଳଭିତ୍ତି ଏହି ସମୟରେ ହିଁ ପ୍ରତିଷ୍ଠିତ ହୋଇଥାଏ । ତେଣୁ ଶିଶୁର ମାନସିକ ବିକାଶ ଲାଗି ବାପା, ମା, ଶିକ୍ଷକ ଓ ଅନ୍ୟାନ୍ୟ ଅଭିଭାବକମାନଙ୍କର ଦାୟିତ୍ୱ ଏହି ସମୟରେ ଖୁବ୍ ବେଶି ।

ପିଲା ବାପା, ମା ଓ ଶିକ୍ଷକଙ୍କୁ ଅନୁକରଣ କରେ । ସେମାନଙ୍କୁ ଖୁସି କରିବା ପାଇଁ ନାନାଭାବରେ ଚେଷ୍ଟା କରେ। ସେମାନେ ଯେଉଁସବୁ କାମ କରିବା ପାଇଁ ବାରଣ କରନ୍ତି, ସେସବୁ କରେ ନାହିଁ - ବରଂ ଯାହା କରିବା ପାଇଁ ସେମାନେ କହନ୍ତି; ତାହା କରେ । ପ୍ରଥମାବସ୍ଥାରେ ଏହା ହେଲା ତାର ସ୍ୱାଭାବିକ ମନୋଭାବ, କିନ୍ତୁ କିଛି ଦିନର ଅଭିଜ୍ଞତା ପରେ ଶିଶୁମାନେ ଏହାର ବିପରୀତ ବ୍ୟବହାର ମଧ୍ୟ କରିଥାନ୍ତି । ବାପା, ମା ଓ ଶିକ୍ଷକମାନେ ଯାହା ଖାଇବାକୁ ଦିଅନ୍ତି, ତାକୁ ଖାଆନ୍ତି ନାହିଁ। ଶିକ୍ଷକମାନେ ଯାହା ପଢ଼ିବାକୁ ଦିଅନ୍ତି, ତା ବିରୁଦ୍ଧରେ ବିଦ୍ରୋହ କରନ୍ତି । ଯେଉଁଠାକୁ ନ ଯିବାକୁ କୁହାଯାଏ, ସେଠାକୁ ଯାଆନ୍ତି । ଏହି କାରଣରୁ ଅନେକ ସମୟରେ ବଡ଼ ହେଲେ ପଣ୍ଡିତର ପୁଅ ମୂର୍ଖ ହୁଅନ୍ତି । ବୁଦ୍ଧି ଅଭାବରୁ ମୂର୍ଖ ହେବା ଅଲଗା କଥା, କିନ୍ତୁ ବାପା ବା ଶିକ୍ଷକଙ୍କ ବିରୁଦ୍ଧରେ ମାନସିକ ବିଦ୍ରୋହ ଯୋଗୁଁ ମୂର୍ଖ ହେବା ଭିନ୍ନ କଥା । ଏହା ସମ୍ପୂର୍ଣ୍ଣ ମନସ୍ତାତ୍ତ୍ୱିକ କାରଣରୁ ଦେଖାଦେଇଥାଏ । ତା'ର ସାହାଯ୍ୟରେ ଶିଶୁର ମାନସିକ ବିକାଶ ଲାଗି ଶିକ୍ଷା ଦିଆଯିବା ଉଚିତ । ପିଲା ପ୍ରଥମ ଅବସ୍ଥାରେ ପଦାପି ଅନ୍ଧାର ଘରକୁ ଡରେନାହିଁ କି ଏକେଲା ରହିବାରେ ତାର କୌଣସି ଦ୍ୱିଧା ନ ଥାଏ; କିନ୍ତୁ ମା' ବାପମାନେ ତାକୁ ଏକେଲା ରହିବାକୁ ଦିଅନ୍ତି ନାହିଁ ଏବଂ ଅନ୍ଧାର ଘରକୁ ସେମାନେ ନିଜେ ଡରନ୍ତି, ଫଳରେ ପିଲାକୁ ଡରକୁଳା କରିଦିଅନ୍ତି । ମାନସିକ ବିକାଶ ଲାଗି ଏହା ଅତ୍ୟନ୍ତ କ୍ଷତିକାରକ । କାରଣ ପିଲା ବଡ଼ ହେଲା ପରେ ତା ମନରେ ନାନାପ୍ରକାର ଘଟଣାବଳୀ, ସ୍ଥାନ ଓ ପରିସ୍ଥିତି ପ୍ରତି ଭୟ ରହିବାରୁ ସେ ସ୍ୱଚ୍ଛନ୍ଦରେ ଅନେକ କ୍ଷେତ୍ରରେ ଆଗେଇ ପାରେ ନାହିଁ। ଏପରିକି ଅନେକ ପିଲା ମାରାତ୍ମକ ଭାବରେ ଭୟାଳୁ ହୋଇପଡ଼ନ୍ତି । ତେଣୁ ସେମାନଙ୍କର ଉପଯୁକ୍ତ ମାନସିକ ବିକାଶ ଲାଗି ଭୟ ଜାତ କରୁଥିବା କୌଣସି କଥା ସେମାନଙ୍କ ଆଗରେ ରଖାଯିବା ଉଚିତ ନୁହେଁ । କାରଣ ପ୍ରଥମ ଅବସ୍ଥାରେ ଯେଉଁ ଭୟ ସୃଷ୍ଟି ହୁଏ, ତାହା ପର ଅବସ୍ଥାରେ ସହଜରେ ମନରୁ ଦୂରୀଭୂତ ହୁଏ ନାହିଁ । ଡାହାଣୀ, ଭୂତ, ପ୍ରେତ ପ୍ରଭୃତି କଥା ସେମାନଙ୍କୁ ଆଦୌ କହିବା ଉଚିତ ନୁହେଁ ଏବଂ ସେମାନେ ଯେତେ ଜିଦ୍ କଲେ, କାନ୍ଦିଲେ, ନ ଶୋଇଲେ ଆମେ ଯେପରି ଭାବରେ ସେମାନଙ୍କୁ ଡରାଇବାକୁ ଚେଷ୍ଟା କରୁ, ତାହା କରିବା ଆଦୌ ଉଚିତ ନୁହେଁ ।

ପିଲାମାନଙ୍କର ଆଉ ଗୋଟିଏ ମୌଳିକ ସ୍ୱାଭବ ହେଉଛି ଯେ, ସେମାନେ ଯୁକ୍ତିଯୁକ୍ତ କଥା ପସନ୍ଦ କରନ୍ତି । ଅବଶ୍ୟ ସେମାନେ ଯାହା ଯୁକ୍ତିଯୁକ୍ତ ବୋଲି ଭାବନ୍ତି, ବଡ଼ମାନଙ୍କ ମତରେ ତାହା ଅଯୌକ୍ତିକ ହୋଇପାରେ । ତଥାପି ଆମମାନଙ୍କର ଏଥିପ୍ରତି ଶ୍ରଦ୍ଧା ରହିବା ଆବଶ୍ୟକ । ଧରନ୍ତୁ ପିଲାଟିକୁ ଧରି ଆପଣ ସବୁବେଳେ ବୁଲି ବାହାରନ୍ତି, କିନ୍ତୁ ହଠାତ୍ ଠିକ୍ କଲେ ଯେ ତାକୁ ସେଦିନ ସାଙ୍ଗରେ ନେବା ଠିକ୍ ହେବନାହିଁ । ଏହାର ଯୁକ୍ତିଯୁକ୍ତ କାରଣ ଥାଇପାରେ, କିନ୍ତୁ ପିଲା ଯିବା ପାଇଁ ଜିଦ୍ କରିବାରେ ମଧ ତାର ଯୁକ୍ତିଯୁକ୍ତ କାରଣ ଅଛି । କାରଣ ସେ ସବୁଦିନେ ଯାଉଥିଲା - ସେଦିନ କାହିଁକି ନ ଯିବ ? ତେଣୁ ସେ କାନ୍ଦିବାକୁ ଆରମ୍ଭ କଲା । ଆପଣ ଆହୁରି ବିରକ୍ତ ହେଲେ, ମାଡ଼ ମାଇଲେ, ତଥାପି ତାର ଜିଦ୍ ଭାଙ୍ଗିଲାନାହିଁ । କାରଣ ଏହି ଜିଦ୍ ଅର୍ଥ - ସେ ଦୃଢ଼ ଭାବରେ ଆପଣଙ୍କ ଅଯୋକ୍ତିକ ଚିନ୍ତା ବିରୁଦ୍ଧରେ ପ୍ରତିବାଦ କରୁଛି । ଏପରିଭାବରେ ଯଦି ଅନେକ ଥର ଘଟେ, ପିଲାକୁ ଯଦି ପ୍ରତ୍ୟେକ ଘଟଣାର ଯୌକ୍ତିକତା ବିଷୟରେ ବୁଝାଇ ଦିଆ ନ ଯାଏ, ତାହେଲେ କ୍ରମେ କ୍ରମେ ସେ ଏକଜିଦିଆ ହୋଇଯାଏ ଏବଂ ଏହି ମନୋଭାବକୁ ପରେ ବଦଳାଇବା ଅତ୍ୟନ୍ତ କଷ୍ଟକର ହୋଇଥାଏ । ଏପରିକି ଭବିଷ୍ୟତରେ ବଡ଼ମାନଙ୍କ ବିରୁଦ୍ଧରେ ତା'ଠାରେ ଏପରି ଭାବରେ ବିଦ୍ରୋହ ଦେଖାଦିଏ ଯେ ତାକୁ ଯାହା କୁହାଯାଏ, ସେ ତାର ଠିକ୍ ବିପରୀତ କାମ କରେ । ସେହି କାରଣରୁ ମଧ ସେ ଶିକ୍ଷକଙ୍କର କଥା ମାନେ ନାହିଁ - ପାଠ ପଢ଼େ ନାହିଁ । ସାମାଜିକ ଶିକ୍ଷା ଓ ମାନସିକ ବିକାଶ ଲାଗି ଏହା ଭୟଙ୍କର କ୍ଷତିକାରକ । ତେଣୁ ପିଲାକୁ ଜିଦ୍‌ଖୋର କରି ବଢ଼ାଇବା ଉଚିତ ନୁହେଁ । ତାକୁ ପ୍ରତ୍ୟେକ କଥା ପାଇଁ ଧୈର୍ଯ୍ୟର ସହିତ ଯୁକ୍ତିଯୁକ୍ତ କାଣ ଦେଖାଇବା ଉଚିତ । ତା'ହେଲେ ସେ କ୍ରମେ କ୍ରମେ କଥାର ଯୌକ୍ତିକତା ହୃଦୟଙ୍ଗମ କରେ ।

ଅନେକ ସମୟରେ ତା ଉପରେ ବାପା, ମା ବା ଶିକ୍ଷକଙ୍କର ସ୍ନେହ ଅଜାଡ଼ି ହୋଇଯାଏ ଏବଂ ପର ମୁହୂର୍ତ୍ତରେ ତା ଉପରେ ମାଡ଼, ଗାଳି ବର୍ଷଣ ହୁଏ । ଏପରି ଅଯୌକ୍ତିକ ବ୍ୟବହାର ବିରୁଦ୍ଧରେ ସେ ବିଦ୍ରୋହୀ ହେବାକୁ ବାଧ ହୁଏ । ତେଣୁ ଖୁବ୍ ଧୈର୍ଯ୍ୟର ସହିତ ଆମମାନଙ୍କୁ ସେମାନଙ୍କଠାରେ ଯୁକ୍ତିଯୁକ୍ତ ମନୋଭାବର ଗଠନ ପାଇଁ ଚେଷ୍ଟା କରିବା ଉଚିତ୍ । ବାପା, ମା' ବା ଶିକ୍ଷକମାନଙ୍କ ଭିତରୁ ଯେଉଁମାନେ ଯେତେ ଯୁକ୍ତିଯୁକ୍ତ, ତାଙ୍କ ପ୍ରତି ପିଲାଙ୍କର ବିଶେଷ ଭାବରେ ଶ୍ରଦ୍ଧା ଥାଏ । ଜଣେ ଯେତେ ଗେହ୍ଲା କଲେ ମଧ୍ୟ ସେ ଯଦି ଅଯୌକ୍ତିକ ହୁଏ, ତାହେଲେ ତା' ପ୍ରତି ପିଲାର ବିଶ୍ୱାସ ତୁଟିଯାଏ । ତା' ଛଡ଼ା ପ୍ରଥମାବସ୍ଥାରେ ପିଲାଙ୍କର ମା, ବାପ ଓ ଶିକ୍ଷକଙ୍କ ପ୍ରତି ଅଗାଧ ବିଶ୍ୱାସ ଥାଏ ଏବଂ ଏହା ସେମାନଙ୍କର ମାନସିକ ବିକାଶ ଲାଗି ବାଞ୍ଛନୀୟ; କିନ୍ତୁ ସେ ସମ୍ପର୍କରେ ଯଦି କୌଣସି ମାନସିକ ଦ୍ୱନ୍ଦ୍ୱ ଦେଖାଦିଏ, ତାହାହେଲେ ଏହା ପିଲା ପକ୍ଷରେ ଭୟଙ୍କର କ୍ଷତିକାରକ । ବିଶ୍ୱାସ-ଅବିଶ୍ୱାସ ଭିତରେ ସେ ଧନ୍ଦି ହେଉଥାଏ ।

ଅନେକ ସମୟରେ ପିଲାର ସୁଶିକ୍ଷା ଲାଗି, ବାପା, ମା ଓ ଶିକ୍ଷକ ତାକୁ ଦଣ୍ଡ ଦେଇଥାଆନ୍ତି । ଯେଉଁ ବାପା ମା'ଙ୍କର ପିଲାମାନଙ୍କ ଲାଗି ଯେତେ ବେଶି ଉଚ୍ଚ ଆକାଂକ୍ଷା ଥାଏ, ସେମାନେ ପିଲାଙ୍କ ପ୍ରତି ସେତେ ବେଶି କଡ଼ା ନଜର ଦିଅନ୍ତି । ଶିକ୍ଷକମାନେ ଯେଉଁ ପିଲାକୁ ଅଧିକ ଭଲପାଆନ୍ତି, ତାକୁ ବେଶି ଶାସନ କରିଥାଆନ୍ତି । ପ୍ରକୃତରେ ଦେଖିବାକୁ ଗଲେ ପିଲାଙ୍କୁ କୌଣସି ପରିସ୍ଥିତିରେ ସୁଦ୍ଧା ମାଡ଼ ମାରିବା

ଉଚିତ୍ ନୁହେଁ । ମାଡ଼ ମାରି ପିଲାକୁ ଉପଯୁକ୍ତ ଶିକ୍ଷାଦେବା ଅସମ୍ଭବ କହିଲେ ଚଳେ । ପ୍ରତ୍ୟେକ ମନୁଷ୍ୟର - ସେ ସାନ ହେଉ ବା ବଡ଼ ହେଉ - ନିଜର ଗୋଟିଏ ମର୍ଯ୍ୟାଦାବୋଧ ରହିଛି । ମାଡ଼ ଖାଇଲେ ଏହି ମର୍ଯ୍ୟାଦାବୋଧ ଆଉ ରହେନାହିଁ । ଏହାର ଅଭାବରେ କୌଣସି ପିଲାକୁ ସୁଧାରିବା ସମ୍ଭବ ନୁହେଁ । ମାଡ଼ ଖାଇବା ପରେ ସେ ହୁଏତ ସେହି କାମଟିକୁ ଆଉ ପ୍ରକାଶ୍ୟରେ କରିବନାହିଁ, କିନ୍ତୁ ତାର ରାଗ ଏତେ ବେଶି ବଢ଼ିଯିବ ଯେ ସେ ବିଦ୍ରୋହ କରିଉଠିବ ।

ପିଲାକୁ ଯେଉଁମାନେ ମାରନ୍ତି, ସେମାନେ ମଧ ଅଯୌକ୍ତିକ ଭାବରେ ଅନ୍ୟ ବିରୋଧରେ ଜମିଉଠୁଥିବା ନିଜର ପ୍ରତିବାଦକୁ ପିଲା ଉପରେ ଛିଣ୍ଡାନ୍ତି । ଏହା ଆହୁରି ଭୟଙ୍କର । ଯେଉଁମାନେ ପିଲାକୁ ବେଶି ମାରନ୍ତି, ସେମାନେ ପ୍ରକୃତରେ ନିଜର ବ୍ୟର୍ଥତାକୁ ପ୍ରକାରାନ୍ତରେ ପ୍ରକାଶ କରିଥାନ୍ତି । କେତେକ କ୍ଷେତ୍ରରେ ସେମାନେ ମାନସିକ ବିକାରଗ୍ରସ୍ତ । ତା' ନ ହେଲେ ମା'ର ସ୍ୱାଭାବିକ ମାତୃସୁଲଭ ସ୍ନେହ ପରିବର୍ତ୍ତେ ଅତ୍ୟାଚାର ଦେଖା ଦିଅନ୍ତାନାହିଁ । ବାପ ବା ଶିକ୍ଷକଙ୍କର ଶିଶୁସୁଲଭ ସ୍ନେହ ପରିବର୍ତ୍ତେ ନିଷ୍ଠୁରତା ପ୍ରକାଶ ପାଆନ୍ତା ନାହିଁ । ଫଳରେ ପିଲାଙ୍କର ମାନସିକ ବିକାଶ ଲାଗି ଏହା ଭୟଙ୍କର କ୍ଷତିକାରକ । ଏଣୁ ଯେକୌଣସି କାରଣରୁ ହେଉନା କାହିଁକି ଏବଂ ଯେକୌଣସି ପରିସ୍ଥିତିରେ ମଧ୍ୟ ପିଲାକୁ କାୟିକ ଦଣ୍ଡ ଦେବା ଅବାଞ୍ଛନୀୟ । ଏପରି କ୍ଷେତ୍ରରେ ପିଲା ଉପରେ ଯୁକ୍ତିଯୁକ୍ତ ଭାବରେ ବିରକ୍ତି ପ୍ରକାଶ କରିବା, ତାକୁ ଆଲୋଚନା କରିବା ଏବଂ ତାର ଫଳାଫଳ ବିଷୟରେ ତାକୁ ସାବଧାନ କରାଇଦେବା ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଉତ୍କୃଷ୍ଟ ଉପାୟ । ପିଲାକୁ ଉପଯୁକ୍ତ ଭାବରେ ଶିଖାଇବା ଲାଗି ଯୁକ୍ତିଯୁକ୍ତ କାରଣ ଥିବା ବ୍ୟବହାର ଓ ସ୍ନେହ ସହାନୁଭୂତି ସର୍ବୋତ୍କୃଷ୍ଟ ପନ୍ଥା ବୋଲି ଧରିବାକୁ ହେବ ।

ପିଲାଙ୍କଠାରେ ଆଉ ଗୋଟିଏ ମୌଳିକ ମାନସିକ ପ୍ରକ୍ରିୟା ହେଉଛି ଯେ ସେମାନେ ସବୁ ବିଷୟରେ ଜାଣିବା ପାଇଁ ଅତ୍ୟନ୍ତ ଉତ୍ସୁକ । ପ୍ରତ୍ୟେକ ଘଟଣା ବିଷୟରେ ସେମାନେ ବହୁ ପ୍ରଶ୍ନ ପଚାରନ୍ତି । ସେମାନେ ଦୁନିଆ ବିଷୟରେ ଶିଖିବାକୁ ଚାହାନ୍ତି ଏବଂ ବାପ-ମା' ଓ ଶିକ୍ଷକଙ୍କ ଉପରେ ସେଥିପାଇଁ ସେମାନେ ବହୁତ ନିର୍ଭର କରନ୍ତି । ସେମାନଙ୍କଠାରୁ ସବୁ ବିଷୟରେ ଶିଖିବାକୁ ପିଲାଏ ଚାହାନ୍ତି - ବାରମ୍ବାର ପ୍ରଶ୍ନ ପଚାରନ୍ତି । ସେମାନଙ୍କର ଏହି ସ୍ୱାଭାବିକ କୌତୂହଳକୁ ଦବାଇ ଦେବା ଉଚିତ ନୁହେଁ । ଏଥିପାଇଁ ଖୁବ୍ ଧୈର୍ଯ୍ୟ ଦରକାର । ତଥାପି ସେମାନଙ୍କର ମାନସିକ ବିକାଶ ଲାଗି ଆମେ ସେମାନଙ୍କର ପ୍ରଶ୍ନାବଳୀର ଯଥାଯଥ ଉତ୍ତରଦେବା ଉଚିତ ଏବଂ ସବୁବେଳେ ସତକଥା ମଧ୍ୟ କହିବା ଉଚିତ । କାରଣ ସେମାନେ ଯଦି ଜାଣିପାରନ୍ତି ଯେ ଆମେମାନେ ମିଛ କହୁଛୁ, ତା' ହେଲେ ବାପ-ମା' ଓ ଶିକ୍ଷକଙ୍କ ଉପରେ ସେମାନଙ୍କର ଯେଉଁ ସ୍ୱାଭାବିକ ଭାବରେ ଗଭୀର ବିଶ୍ୱାସ ରହିଥାଏ, ତାହା ଚାଲିଯିବା ସଙ୍ଗେ ସଙ୍ଗେ ସେମାନଙ୍କଠାରେ ଭୀଷଣ ମାନସିକ ପ୍ରତିକ୍ରିୟା ଓ ଦ୍ୱନ୍ଦ୍ୱ ଦେଖାଯାଏ । କେତେକ ପ୍ରଶ୍ନର ଉତ୍ତର ଦେବା ସହଜ ହୋଇ ନ ପାରେ, କିନ୍ତୁ ସେପରି କ୍ଷେତ୍ରରେ ଅନ୍ୟାନ୍ୟ ଘଟଣା ପ୍ରତି ସେମାନଙ୍କର ମନକୁ ବଦଳାଇ ଦିଆଯାଇପାରେ; ତଥାପି ତାକୁ ମିଛ କହିବା ଉଚିତ ନୁହେଁ ।

ତା'ଛଡ଼ା ପିଲାଏ ସ୍ୱାଭାବିକ ଭାବରେ ଡେଇଁ କୁଦି ପାଟିକରି ଖେଳିବାକୁ ଭଲ ପାଆନ୍ତି । ଯେଉଁ ପିଲା ଏହା ନ କରେ, ସେ ପ୍ରକୃତରେ ମାନସିକ ବିକାରଗ୍ରସ୍ତ । ତେଣୁ ପିଲାକୁ ଖେଳିବା ପାଇଁ ଅବାଧ ସୁବିଧା ଦେବା ଉଚିତ । ସେମାନଙ୍କର ସ୍ୱାଧୀନତାରେ କୌଣସି ପ୍ରତିବନ୍ଧକ ରହିବା ଉଚିତ ନୁହେଁ । ତା ବୋଲି ତ ସେମାନେ ସବୁବେଳେ ଖେଳିବେ ନାହିଁ, କିନ୍ତୁ ଖେଳ ବନ୍ଦ କରି ପଢ଼ିବାକୁ ହେଲେ ପଢ଼ାପଢ଼ି ପ୍ରତି ସ୍ୱାଭାବିକ ଆଗ୍ରହ ସୃଷ୍ଟି କରାଇ ଖେଳରୁ ନିବୃତ୍ତ କରାଇବା ଉଚିତ । ଅର୍ଥାତ୍ ପିଲାଙ୍କଠାରେ ଆଗ୍ରହ ସୃଷ୍ଟି କରାଇ ସବୁ କାମ କରାଇ ପାରିଲେ ସେଥିରେ ତାର ସ୍ୱାଭାବିକ ଆନନ୍ଦ ହୁଏ ଏବଂ ସେ ବିଷୟରେ ତାର ପ୍ରକୃତ ଉତ୍ସାହ ଦେଖାଦିଏ । ଜୋର ଜବରଦସ୍ତ କରି ପାଠ ପଢ଼ାଇଲେ ପାଠ ଭଲ ହୁଏନାହିଁ । ଏଥିପ୍ରତି ଆମର ନଜର ଖୁବ୍ କମ୍ ଥାଏ ।

ମୋଟାମୋଟି ଭାବରେ କହିବାକୁ ଗଲେ ପିଲାକୁ ସ୍ନେହ ସହାନୁଭୂତିର ସହିତ, ଆଦର ଯତ୍ନ କରି, ଯୁକ୍ତିଯୁକ୍ତ ଭାବରେ ତାକୁ ସବୁକଥା ଶିଖାଇ, ତା'ଠାରେ ସବୁବେଳେ ଉଚ୍ଚ ଆକାଂକ୍ଷା ଜାଗ୍ରତ କରି, ତାକୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇ ଲାଳନପାଳନ ଓ ଶିକ୍ଷାଦାନ କରିପାରିଲେ ତାର ମାନସିକ ବିକାଶ ସମ୍ପୂର୍ଣ୍ଣ ଭାବରେ ସମ୍ଭବ ହୋଇପାରିବ । ଭୟ, ଆଶଙ୍କା, ଉଦ୍‌ବେଗ ଓ ନାନାପ୍ରକାର ମାନସିକ ଦ୍ୱନ୍ଦ୍ୱ ଦେଖାଦେଲେ, ପିଲାର ମନ ସ୍ୱାଭାବିକ ଭାବରେ ବିକାଶଲାଭ କରିପାରେ ନାହିଁ । ସେଥିଲାଗି ବାପା, ମାଆ ଓ ଅନ୍ୟାନ୍ୟ ଅଭିଭାବକମାନଙ୍କର ପିଲାଙ୍କୁ ଶିଖାଇବା ଲାଗି ବହୁତ ବେଶି ଯତ୍ନବାନ ହେବା ଉଚିତ ଏବଂ ଏ ଦିଗରେ ସମସ୍ତେ ଉପଯୁକ୍ତ ଶିକ୍ଷା ମଧ୍ୟ ପାଇବା ଉଚିତ ।

ସୌଜନ୍ୟ : ପ୍ରଫେସର ରାଧାନାଥ ରଥଙ୍କ *ଦ୍ୱାରା ଲିଖିତ 'ଆମେ : ଆମ ପିଲା '*।

□□□



# ଖେଳ ମାଧ୍ୟମରେ ଶିକ୍ଷା

Children, like delicate buds blossom into all round personality only through kindness, care and love; not fear, punishment and threats.

"ଏକ ସୁକୋମଳ ପୁଷ୍ପକଳିକା ପ୍ରସ୍ଫୁଟିତ ହେଲାପରି, ଶିଶୁମାନଙ୍କର ବ୍ୟକ୍ତିତ୍ୱ ସ୍ନେହଭରା ଆଦର, ପ୍ରେମ ଓ ଯତ୍ନଦ୍ୱାରା ହିଁ ବିକଶିତ ହୋଇଥାଏ; ଭୟ ପ୍ରଦର୍ଶନ, ଧମକ ପ୍ରଦାନ କି ଦଣ୍ଡବିଧାନ ଦ୍ୱାରା ନୁହେଁ।"-

ପ୍ରଚଳିତ ନର୍ସରୀ ସ୍କୁଲଟିଏ ଚଳାଇବା ସହଜ। ସ୍କୁଲ କଲେଜ ଶ୍ରେଣୀ ପରି କୋଡ଼ିଏ ତିରିଶଟି ଚୌକିରେ ଛୋଟ ଛୋଟ ପିଲାମାନଙ୍କୁ ବସାଇ ଜଣେ ଶିକ୍ଷିକା ବେତଟିଏ ଧରି ଅ, ଆ, A, B, ଶିଖାଇବା ସହଜ କିନ୍ତୁ ତିନି ଚାରି ବର୍ଷର ପିଲା ଯେ ଏପରି ଶିକ୍ଷଣୀୟ ପ୍ରକ୍ରିୟା ପାଇଁ ସମ୍ପୂର୍ଣ୍ଣ ଅସମର୍ଥ - ତା'ର ବୌଦ୍ଧିକ ବିକାଶ ଲାଗି ଏହା ଏକାବେଳେକେ ଅନୁପଯୁକ୍ତ। ଏହି ବିଷୟରେ ସାଧାରଣ ନର୍ସରୀ ସ୍କୁଲ ପରିଚାଳକ ଏବଂ ଶିକ୍ଷିକାଙ୍କର ଧାରଣା ଥିଲା ପରି ଜଣା ଯାଉନାହିଁ।

ଛୋଟ ଛୋଟ ପିଲାମାନେ ଖେଳିବାକୁ ଭଲ ପାଆନ୍ତି। ଏହା ହେଉଛି ସେମାନଙ୍କର ସ୍ୱାଭାବିକ ଅନୁକ୍ରିୟା। ଏହି ଖେଳ ମାଧମରେ ହିଁ ସେମାନେ ବହୁତ କଥା ଶିଖିଥାନ୍ତି। ଏ ବିଷୟରେ ଅନେକ ଅଭିଭାବକ ଓ ନର୍ସରି ସ୍କୁଲ ପରିଚାଳକମାନଙ୍କର ଧାରଣା ଅସ୍ୱଷ୍ଟ।

ସେମାନଙ୍କର ମାନସିକତାର ବିଭିନ୍ନ ଭାଗ ଉପଯୁକ୍ତ ବିକାଶ ଲାଗି ଖେଳ ମାଧମ ଶିକ୍ଷା କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ମଧ୍ୟ ସହଜ ନୁହେଁ। ଏ ବିଷୟରେ ଶିଶୁ ମନୋବିଜ୍ଞାନ ସମ୍ବନ୍ଧୀୟ ଗଭୀର ଜ୍ଞାନର ଆବଶ୍ୟକତା ରହିଛି। ଶିଶୁର ମନଲାଖି ଖେଳ, କୌତୁକ, ଗପ ପ୍ରଭୃତିକୁ ଏପରି ଭାବରେ ସଂଗଠିତ କରିବା ଦରକାର ଯେ ପିଲାମାନେ ମନ ଆନନ୍ଦରେ ଖେଳୁଥିବା ସମୟରେ ହିଁ ସେମାନଙ୍କର ମାନସିକ ବିକାଶ ଦ୍ରୁତ ଗତିରେ ବଢ଼ିଚାଲିଥାଏ। ସମସ୍ତଙ୍କ ଆଖିରେ ଏହା ଖେଳପରି ଜଣାଯାଉଥାଏ। କିନ୍ତୁ ତା' ପଛରେ ବହୁତ ମନୋବୈଜ୍ଞାନିକ ଗବେଷଣା ତଥା ଚିନ୍ତା କାମ କରୁଥାଏ। ତେଣୁ ବିଭିନ୍ନ ବୟସର ପିଲାମାନଙ୍କ ପାଇଁ ଉପଯୁକ୍ତ ଖେଳମାଧମ ସାମଗ୍ରୀ ପ୍ରସ୍ତୁତ କରିବାକୁ ବହୁତ ସମୟ ଲାଗେ। ସପ୍ତାହର ପାଞ୍ଚଦିନର ଖେଳ କାର୍ଯ୍ୟକ୍ରମ ପାଇଁ ଶିକ୍ଷିକାମାନେ ବହୁ ପରିଶ୍ରମ କରି ପିଲାଙ୍କ ମନଲାଖି କାର୍ଯ୍ୟକ୍ରମ ତିଆରି କରିଥାନ୍ତି।

ପିଲାମାନଙ୍କୁ ବେତ ଧରି ଶାସନ କରିବା ସହଜ; କିନ୍ତୁ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଏହା ଯେ ଭୟଙ୍କର ଭାବରେ ପିଲାର ଆତ୍ମବିଶ୍ୱାସ ବିକାଶରେ ବାଧା ଆଣେ - ଏହା ଅନେକେ ଜାଣନ୍ତି ନାହିଁ। ତେଣୁ

କୌଣସି ଭୟ ବିଦ୍ୱେଷ ଓ ଶାସ୍ତି ବିଧାନ ସାହାଯ୍ୟ ନନେଇ କେବଳ ସ୍ନେହ, ଆଦର ଓ ଯତ୍ନ ମାଧ୍ୟମରେ ପିଲାଙ୍କୁ ଶିକ୍ଷା ଦେବା ପାଇଁ ଉଦ୍ୟମ ଅତ୍ୟନ୍ତ ସମୟସାପେକ୍ଷ ଏବଂ ଦୁରୂହବ୍ୟାପାର । ଫଳରେ ଏପରି ଅନୁଷ୍ଠାନଟିଏ ସ୍ୱାଭାବିକ ଭାବରେ ପିଲା ଓ ଅଭିଭାବକମାନଙ୍କ ପାଇଁ ଗୋଟିଏ ପ୍ରକାରର ମନସ୍ତାତ୍ତ୍ୱିକ ଉପଦେଶ କେନ୍ଦ୍ରରେ ପରିଣତ ହୋଇଯାଏ । ପିଲା କାହିଁକି ଅବାଧ୍ୟ ହୁଏ, ଅନ୍ୟ ପିଲାଙ୍କ ପ୍ରତି ଖରାପ ବ୍ୟବହାର କରେ, ଏପରିକି ପାରିବାରିକ ଅସହିଷ୍ଣୁତା ଓ କଠୋରତା ଯୋଗୁଁ ମୂକ ହୋଇଯାଏ । ଏପରି ପିଲାମାନଙ୍କୁ ସ୍ୱାଭାବିକ ଅବସ୍ଥାକୁ ଆଣିବା ଆମ ଶିକ୍ଷକମାନଙ୍କର କର୍ତ୍ତବ୍ୟରେ ପରିଣତ ହୋଇଯାଇଛି, ଖେଳମାଧ୍ୟମ ସ୍କୁଲ ଏପରି ଭାବରେ ପରିଚାଳିତ ହୋଇପାରିଲେ ହିଁ ପିଲାମାନଙ୍କର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହେବ ।

ଆମ ସମାଜରେ ସମୟାନୁବର୍ତ୍ତିତା ପ୍ରାୟ ନାହିଁ କହିଲେ ଚଳେ । ବଡ଼ମାନେ ଏ ବିଷୟରେ ଆଦୌ ସଚେତନ ନୁହଁନ୍ତି, ବିଭିନ୍ନ ସମୟରେ ଲୋକେ ସଭାସମିତିକୁ, ଅଫିସ୍ କଲେଜକୁ ଯାଆନ୍ତି, ଏଥିପାଇଁ ନାନା ପ୍ରକାରର ସାମାଜିକ ବିଭ୍ରାଟ ଦେଖାଦେଇଥାଏ । ତେଣୁ ପିଲାମାନଙ୍କର ସମୟାନୁବର୍ତ୍ତିତା ବିଷୟରେ ଜୋର ଦେବା ଉଚିତ ।

ପିଲାଟିକୁ ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବାକୁ କିଏ ନ ଚାହେଁ ? ପୁଣି ଭାରତ ପରି ଦେଶରେ ? ଶିଶୁ ସର୍ବାଙ୍ଗୀନ ବିକାଶ ଦିଗରେ ଚରମ ସ୍ୱାର୍ଥତ୍ୟାଗ କରିବାରେ ଭାରତୀୟ ପିତାମାତା ଆଜି ପୃଥିବୀରେ ଅଦ୍ୱିତୀୟ । ପିଲାଟିଏ ଭଲ ପାଠ ପଢ଼ିବ, ସବୁ କ୍ଷେତ୍ରରେ ଆଗୁଆ ହେବ, ଏଥିପାଇଁ ସବୁ ବାପା ମା'ଙ୍କର ପ୍ରାଣପଣେ ଉଦ୍ୟମ ଥାଏ । କିନ୍ତୁ ବଡ଼ ଦୁଃଖର କଥା, ଠିକ୍ ସମୟରେ ସଠିକ୍ ଯତ୍ନ ନେବା କେବଳ କାଁ ଭାଁ ସଚେତନ ପିତାମାତାହିଁ ଜାଣନ୍ତି । ଉଣା ଅଧିକେ ଅନେକେ ପିଲାମାନଙ୍କୁ କେବଳ ଭଲ ପାଆନ୍ତି । ଗେହ୍ଲାବି କରନ୍ତି । କିନ୍ତୁ ଶିଶୁର ବିକାଶ ଦିଗରେ ଏତିକି ଯଥେଷ୍ଟ ନୁହେଁ । ଏଥିପାଇଁ ଦରକାର ମନସ୍ତତ୍ତ୍ୱ ଭିତ୍ତିକ ସୁନିୟନ୍ତ୍ରିତ କାର୍ଯ୍ୟକ୍ରମ । ବାପା ଓ ଶିକ୍ଷକମାନେ ଏହି ପ୍ରଶ୍ନଗୁଡ଼ିକୁ ଅନୁଧ୍ୟାନ କରିବା ବାଞ୍ଛନୀୟ ।

୧. ଆମେ ସମସ୍ତେ ପିଲାମାନଙ୍କୁ ଭଲପାଉ । କିନ୍ତୁ ସେମାନଙ୍କର ମନକଥା ବୁଝିବା ପାଇଁ ଚେଷ୍ଟା କରୁ କି ?

୨. ଶିଶୁ ନୂଆନୂଆ କଥା ଜାଣିବା ପାଇଁ ଅନେକ କୌତୁହଳପୂର୍ଣ୍ଣ ପ୍ରଶ୍ନ ପଚାରେ । ଆମେ ସେଗୁଡ଼ିକର ଉତ୍ତର ଦେବା ଉଦ୍ୟମ କରୁ କି ?

୩. ପିଲାମାନେ ବାପା ମା'ଙ୍କର କିପରି ଶ୍ରଦ୍ଧାଭାଜନ ହେବେ, ସେ ବିଷୟରେ ଆମେ ଯତ୍ନବାନ ହେଉ କି ?

୪. ପିଲାମାନେ ଖେଳିବାକୁ ଭଲ ପାଆନ୍ତି । ଖେଳରୁ ଆନନ୍ଦ ପାଆନ୍ତି । ଖେଳକୁଦ ସହିତ ଶିଶୁ ପାଠ

ପଢ଼ାକୁ ସାମିଲ କରିବାର ଉପାୟ ବିଷୟରେ ଆମେ ଭାବୁ କି ?

୫. ଶିଶୁର ଶାରୀରିକ ସ୍ୱାସ୍ଥ୍ୟ, ଖାଦ୍ୟପେୟ, ପରିଷ୍କାର ପରିଚ୍ଛନ୍ନତା ଆଦି ବିଷୟରେ ପ୍ରତ୍ୟେକ ପିତାମାତା ସବୁବେଳେ ଉଦ୍ୟମ କରନ୍ତି କି ?

୬. ଖେଳକୁଦ ମାଧ୍ୟମରେ ଶିଶୁର ବୁଦ୍ଧି, ବିବେକ, ଆଚାର ବ୍ୟବହାର ଇତ୍ୟାଦିର ବିକାଶଗତ କୌଶଳ ବିଷୟରେ ଆଲୋଚନା କରୁ କି ?

୭. ପ୍ରତ୍ୟେକ ଶିଶୁର ବ୍ୟକ୍ତିତ୍ୱ ଅଛି । ଆମେ ତା'ର ବ୍ୟକ୍ତିତ୍ୱର ବିକାଶ ଦିଗରେ କିପରି ଧ୍ୟାନ ଦେବା କଥା ଜାଣୁ କି ?

୮. ଶିଶୁକୁ ଶିଖାଇବାକୁ ହେଲେ ତା'ର କଥା ପ୍ରଥମେ ଶୁଣିବା ଏକାନ୍ତ ଆବଶ୍ୟକ । ଏଥିନିମନ୍ତେ ଆମେ ଆମର ପିଲାମାନଙ୍କ ସହିତ ଆଳାପ ଆଲୋଚନା କରୁ କି ?

୯. ବାପା ମା' ହିସାବରେ ଆମେ ନିଜ ପିଲାମାନଙ୍କୁ ଭଲ ଭାବରେ ଜାଣିଛୁ କି ?

ବୌଦ୍ଧିକ ବିକାଶ ସହିତ ଆହୁରି କେତେକ ସାମାଜିକ ଚାଲିଚଳନ ବିଷୟରେ ମଧ୍ୟ ଏହି ସମୟରୁ ଶିକ୍ଷା ଦେବା ଉଚିତ । ଅତି ପିଲାଦିନରୁ ଶୃଙ୍ଖଳାଜ୍ଞାନ, ସମୟାନୁବର୍ତ୍ତିତା, ଅନ୍ୟମାନଙ୍କୁ ସମ୍ମାନ ଦେଖାଇବା ପ୍ରଭୃତି କେତେକ ଅତ୍ୟାବଶ୍ୟକ ସାମାଜିକ ବ୍ୟବହାର ଏହି ବୟସରୁ ଆରମ୍ଭ କରାଯାଇଥାଏ । ଛୋଟ ଛୋଟ ପିଲାମାନେ ଧାଡ଼ିବାନ୍ଧି ଶୃଙ୍ଖଳିତ ଭାବରେ ଯାଇ ହାତଧୋଇ ଖାଇବା ପାଇଁ ପ୍ରସ୍ତୁତ ହେବା ନିମନ୍ତେ ଶିଖାଯାଏ । ସେହିପରି ସମାନୁବର୍ତ୍ତିତା । ସେମାନେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ସ୍କୁଲକୁ ଆସିବା ଉଚିତ୍ । ପ୍ରଥମରୁ ହିଁ ଏ ବିଷୟରେ ଜୋର ଦିଆଯାଇଥାଏ । ତାହା ନ ହେଲେ ପିଲାମାନେ ଇଚ୍ଛା ଅନୁସାରେ ସ୍କୁଲକୁ ଆସିବେ । ସେଥିରେ ସେମାନେ ସମୟାନୁବର୍ତ୍ତିତା ଶିଖିବେ କିପରି ? ତା ଛଡ଼ା ଠିକ୍ ସମୟରେ ସମସ୍ତେ ଆସିଲେ ସିନା ଖେଳ କାର୍ଯ୍ୟକ୍ରମକୁ ସୁଚାରୁରୂପେ ପରିଚାଳିତ କରିହେବ । ସମସ୍ତେ ଏକାଠି ବସି ଗୋଟିଏ ପ୍ରକାରର ଖାଦ୍ୟ ଖାଇ ବସିଲେ ସେମାନଙ୍କ ଭିତରେ ଏକତା ମନୋଭାବ ସୃଷ୍ଟି ହୋଇପାରିବ । ଏହିପରି କେତେଗୁଡ଼ିଏ ଅତ୍ୟାବଶ୍ୟକ ସାମାଜିକ ବ୍ୟବହାର ସେମାନଙ୍କୁ ଶିକ୍ଷା ଦିଆଯାଇଥାଏ ।

**ଖେଳ ମାଧମ ଶିଶୁଶିକ୍ଷା କାର୍ଯ୍ୟକ୍ରମର ମୌଳିକ ଲକ୍ଷ୍ୟ:**

୧. ପ୍ରତ୍ୟେକ ଶିଶୁର ମାନସିକ ତଥା ବ୍ୟାବହାରିକ କ୍ରିୟାକଳାପର ଯଥାଯଥ ବିଶ୍ଳେଷଣ ।

୨. ବିଦ୍ୟାଳୟ ତଥା ଗୃହ ପରିବେଶରେ ପିଲାମାନଙ୍କର ଆଚରଣକୁ ଆୟତ୍ତ କରିବା ଉପାୟ ଉପରେ ଗୁରୁତ୍ୱ ଆରୋପ ।

୩. ଶିଶୁର ପ୍ରୟୋଜନ, ମାନସିକ ଓ ଦୈହିକ ପରିପକ୍ୱତା, ସାଫଲ୍ୟ ଓ ଆନନ୍ଦକୁ ଭିତ୍ତିକରି ଖେଳକୁଦ, ପର୍ଯ୍ୟବେକ୍ଷଣ, ପ୍ରଶ୍ନଉତ୍ତର ଓ ଆଳାପ ଆଲୋଚନା ଆଦି ପଦ୍ଧତିରେ ଶିକ୍ଷାଦାନ ।

୪. ଶିଶୁର ଆଚରଣଗତ ସମସ୍ୟା ଓ ଶିକ୍ଷାଗତ ସାଫଲ୍ୟ ଆଦିକୁ ସେମାନଙ୍କର ପିତାମାତାଙ୍କ ଆଗରେ ଉପସ୍ଥାପନା ।

୫. ଶିଶୁମାନଙ୍କୁ ଉତ୍ସାହିତ କରିବା ପାଇଁ ସେମାନଙ୍କ ସହିତ ସ୍ନେହପୂର୍ଣ୍ଣ ମୁକ୍ତ ଆଳାପ ଆଲୋଚନା ।

୬. ଶିକ୍ଷକ ତଥା ପିତାମାତା କିପରି ସ୍ନେହ ଓ ଆଦର ଦେଇ ପିଲାମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଉପଯୋଗୀ କରିପାରିବେ, ତାହା ଉପରେ ଗୁରୁତ୍ୱ ଆରୋପ । ଶିକ୍ଷିକାମାନଙ୍କ ଦ୍ୱାରା ପରୀକ୍ଷାମୂଳକ ଭାବେ ଶିକ୍ଷାଉପକରଣ ପ୍ରସ୍ତୁତି, ପ୍ରଦର୍ଶନ ଓ ଗବେଷଣା କରାଯାଏ । ଏହିସବୁ ପ୍ରଶ୍ନଗୁଡ଼ିକ ଆଖି ଆଗରେ ରଖି ଗୋଟିଏ ଖେଳ ମାଧମ ଅନୁଷ୍ଠାନର ଯୋଜନା ପ୍ରସ୍ତୁତି ଖେଳ ମାଧ୍ୟମ ବାଲ୍ୟଶିକ୍ଷା କାର୍ଯ୍ୟକ୍ରମର ମୌଳିକ ଲକ୍ଷ୍ୟ :

## ଶିଶୁମାନଙ୍କ ବିଷୟରେ କେତୋଟି ଜାଣିବା କଥା:

୧. ଶିଶୁମାନଙ୍କୁ ଆଦର କଲେ ସେମାନେ ପାଖେଇ ଆସିବେ, ଭୟ ଦେଖାଇଲେ ଦୂରେଇ ଯିବେ ।

୨. ଶିଶୁମାନଙ୍କୁ ଅଧିକ ମନେ ରଖିବାକୁ ବାଧ କଲେ, ସେମାନଙ୍କର ମନ ଦବିଯାଏ, ମାନସିକ ଶକ୍ତି ଅବଦମିତ ହୁଏ ।

୩. ଶିଶୁମାନେ ଜାଣିବାକୁ କ'ଣ, କିପରି ଓ କାହିଁକି ଭଳି ପ୍ରଶ୍ନ ପଚାରିଥାଆନ୍ତି । ସେଗୁଡ଼ିକ ଉତ୍ତର ଦିଆଯିବା ଦରକାର ।

୪. ପିଲାମାନଙ୍କ ସହ ଆଳାପ ଆଲୋଚନା କଲେ ସେମାନଙ୍କର କହିବାର ଶକ୍ତି ବଢ଼େ ଓ ସେମାନେ କୁହାଳିଆ ହୋଇ ପାରନ୍ତି ।

୫. ପିଲାମାନଙ୍କ ଉପରେ ଅଧିକ ବୋଝ ଲଦି ଦିଅନ୍ତୁ ନାହିଁ । ହସ ଖୁସିରେ ସେମାନେ ଶିଖନ୍ତି । ଧମକ ଦେଲେ ଡରି ଯାଆନ୍ତି ।

ସୌଜନ୍ୟ : ପ୍ରଫେସର ରାଧାନାଥ ରଥଙ୍କ ଦ୍ୱାରା ଲିଖିତ *'ଆମେ : ଆମ ପିଲା'* ।



ନିମ୍ନରେ କେତେକ 'ଖେଳ' ଆମେ ଉପସ୍ଥାପନା କରୁଛୁ । ଶିକ୍ଷକମାନେ ଅଧିକ ଖେଳ ସଂଗ୍ରହ କରିବେ ଏବଂ ପିଲାମାନଙ୍କ ସହିତ ସେହି ସବୁ ଖେଳ ଖେଳିବେ .. ।

## ଭାଇ କହିଲେ

ପିଲାମାନଙ୍କୁ ଗୋଲ କରି ଠିଆ କରାଯିବ । ସେମାନଙ୍କ ଭିତରୁ ଜଣକୁ 'ଦଳପତି' ବା 'ଭାଇ' ହିସାବରେ ବଛାଯିବ । ଦଳପତି ପିଲାମାନଙ୍କୁ ଯାହା କହିବେ ଭାଇ କହିଲେ ବୋଲି କହିବେ । 'ଭାଇ କହିଲେ ବସ' ତାହାହେଲେ ସବୁପିଲା ବସିବେ । ଯଦି ଦଳପତି ଭାଇ କହିବେ ହାତ ଟେକ, ତାହାହେଲେ ସବୁ ପିଲା ହାତ ଟେକିବେ । ଯଦି ଦଳପତି କେବଳ ଗୋଡ଼ ହଲାଇ କହିବେ , ତାହାହେଲେ ପିଲାମାନେ ତାହା କରିବେ ନାହିଁ । ଯଦି ପିଲାଙ୍କ ଭିତରୁ କେହି ତାହା କରେ ତାହାହେଲେ ସେ ଖେଳ ଦଳ ଭିତରୁ ବାହାରି ଯିବାକୁ ପଡ଼ିବ । ଦଳପତି ବହୁତ ଶୀଘ୍ର ଶୀଘ୍ର କହିବେ ଏବଂ ମଝିରେ 'ଭାଇ କହିଲେ' ନ କହି କେବଳ ଆଦେଶ ଦେବେ । ତାହାହେଲେ ପିଲାମାନେ ଜାଣିପାରିବେ ନାହିଁ ।

ଏହି ଖେଳ ଦ୍ୱାରା ପିଲାମାନେ ଦେହର ଅଙ୍ଗପ୍ରତ୍ୟଙ୍ଗ, ବାମ, ଡାହାଣ, ପୂର୍ବ, ପଶ୍ଚିମ ଆଦି ବିଭିନ୍ନ ଜିନିଷ ଶିକ୍ଷା କରିପାରିବେ ଏବଂ ସେମାନଙ୍କୁ ଆନନ୍ଦ ଦେବ ।

## ଝୋଟି ଖେଳ

ସ୍କୁଲ ଘରେ କିମ୍ବା ବାହାରେ ବିଭିନ୍ନ ଘର କଟାଯିବ ଏବଂ ଗୋଟିଏ ପିଲାକୁ ଗୋଟିଏ ଘରେ ଠିଆ ହେବା ପାଇଁ କୁହାଯିବ । ଜଣେ ଦଳପତି ରହିବେ, ଯାହାଙ୍କ ପାଇଁ ଘର ରହିବ ନାହିଁ , ପ୍ରତିପିଲା ନିଜର ନାମ ବାଛିବେ । ଫଳ ଯେଉଁଳି, ଫୁଲ ହେଉ କିମ୍ବା ପନିପରିବା ହେଉ, କିନ୍ତୁ ଗୋଟିଏ ପ୍ରକାର ଜିନିଷର ନାମ ରହିବ । ଦଳପତି ପିଲାମାନଙ୍କୁ ମଝିରେ ଠିଆ ହୋଇ କହିଦେବେ ମୁଁ ବଜାରକୁ ଯାଉଛି । ମୁଁ ଗୋଟିଏ ବାଇଗଣ କିଣିବି । ତାହାହେଲେ ଯିଏ ବାଇଗଣ ହୋଇଥିବ ସେ ତା ପଛରେ ଦୌଡ଼ିବ । ସେ ଯେତେ ପ୍ରକାର ନାମ କରୁଥିବ ସେହି ଅନୁସାରେ ଗୋଟେ ପରେ ଗୋଟେ ପିଲା ତା ପଛରେ ଧାଇଁବାକୁ ଲାଗିବେ । କିଛି ସମୟ ପରେ ଦଳପତି କହିବେ ଝୁଡ଼ି ଫାଟିଗଲା । ସେତେବେଳେ ସବୁପିଲା କଟା ହୋଇଥିବା ଘରେ ଜଣେ ଜଣେ ରହିବେ । ଯେହେତୁ ଦଳପତିର ଘର ନଥିବ, ସେଥିଯୋଗୁଁ ଗୋଟିଏ ପିଲା ନିଶ୍ଚୟ ଘର ପାଇବ ନାହିଁ । ସେ ହେବ ନୂତନ ଦଳପତି । ଏଭଳି ଭାବରେ ଖେଳ ଚାଲିବ, ଏହାଦ୍ୱାରା ପିଲାମାନେ ବିଭିନ୍ନ ପନିପରିବା, ଫଳ, ଫୁଲ ବିଷୟରେ ଜାଣିପାରିବେ ଏବଂ ଚଳଚଞ୍ଚଳ ହୋଇପାରିବେ ।

## ଦଳପତି ଚିହ୍ନଟ

ଏ ଖେଳରେ ପିଲାମାନେ ଗୋଲ ହୋଇ ବସିବେ । ଜଣେ ପିଲା ବାହାରକୁ ଯିବ । ବସିଥିବା ପିଲାମାନେ ତାଙ୍କ ଭିତରୁ ଜଣକୁ ଦଳପତି ଭାବେ ନିର୍ବାଚିତ କରିବେ । ସେ ଯାହା କହିବ ସବୁପିଲା ତାହା କହିବେ । ଦଳପତି ମୁଣ୍ଡ କୁଣ୍ଡେଇଲେ ସବୁପିଲା ମୁଣ୍ଡ କୁଣ୍ଡାଇବେ । ଦଳପତି କାନ ମୁଡ଼ିହେଲେ ସବୁପିଲା କାନମୁଡ଼ି ହେବେ । କିନ୍ତୁ ଦଳପତି ଆଡ଼କୁ ସବୁପିଲା ଏକା ଲୟରେ ଚାହିଁବେ ନାହିଁ । ମଝିରେ ମଝିରେ ଚାଲାକ ଭାବରେ ଚାହିଁ ସେ ଯାହା କରୁଥିବେ ତାହା କରିବେ । ବାହାରେ ଥିବା ପିଲା ଆସି ପିଲାଙ୍କ କିଏ ଦଳପତି ଅଛି ଚିହ୍ନଟ କରିବ । ଯଦି କରିପାରିବ ତାହାହେଲେ ଦଳପତି ବାହାରକୁ ଯିବ । ନ ହେଲେ ବାହାରେ ଥିବା ପିଲାଟି ପୁଣି ଆଉଥରେ ଚେଷ୍ଟା କରିବ ଦଳପତିକୁ ଚିହ୍ନଟ କରିବା ପାଇଁ । ଜଣକୁ ୩ ଥର ସୁଯୋଗ ଦିଆଯିବ, ନହେଲେ ବାହାରେ ଥିବା ପିଲାଙ୍କୁ ଦଣ୍ଡ ପଡ଼ିବ । ଗୀତ ଗାଇବା, ନାଚ କରିବା, ମଜ୍ଜାକଥା କହିବା ଆଦି ଏଭଳି ଖେଳ ଚାଲିବ ।

## ମନେ ରଖିବା ଖେଳ

ପ୍ରତି ପିଲାକୁ ଗୋଲ ଭାବରେ ବସାଇ ଦିଆଯିବ । କୌଣସି ଗୋଟିଏ ଯାଗାରୁ ଖେଳ ଆରମ୍ଭ ହେବ । ପ୍ରଥମ ପିଲା ଗୋଟିଏ ଫଳ ନାମ କହିବ । ଧର ସେ 'କମଳା' କୁହେ, ତାହାହେଲେ ଦ୍ୱିତୀୟ ପିଲା 'କମଳା' କହିବା ସହିତ ଆଉ ଗୋଟିଏ ଫଳନାମ କହିବ ଯଥା କମଳା, ପିଜୁଳି । ଏହି ଚାଲିବା । ଏହାଦ୍ୱାରା ପିଲାର ଧୈର୍ଯ୍ୟ ଧରି ଶୁଣିବା ଏବଂ ମନେ ରଖିବାର ଶକ୍ତି ବଢ଼ିବାରେ ସାହାଯ୍ୟ କରିବ ।

## ଅନ୍ତାକ୍ଷରୀ ଓ ପହଳି

ଆମେ ସାଧାରଣତଃ ଅନ୍ତାକ୍ଷରୀ ବ୍ୟବହାର କରୁ । କିନ୍ତୁ ପିଲାମାନଙ୍କୁ ମଧ୍ୟ ବିଭିନ୍ନ ଶବ୍ଦ ଦେଇ ଏହା ମଧ୍ୟ କରାଯାଇ ପାରିବ । ଏହା ଶିଖିବା ପାଇଁ ସାହାଯ୍ୟ କରିବ ।

ପହଳି ଏକ ବଡ଼ ମାଧ୍ୟମ ଯାହା ପିଲାମାନଙ୍କୁ ଭାବିବା ପାଇଁ ସାହାଯ୍ୟ କରିଥାଏ । ଜଣେ ପିଲା କହିବ ଏବଂ ଅନ୍ୟମାନେ ଏହାର ଉତ୍ତର ଦେବେ ।

ଏହାଛଡ଼ା ପିଲାମାନଙ୍କୁ ବିଭିନ୍ନ ଆକାରର କାଗଜ, ପ୍ଲାଷ୍ଟିକ ଏବଂ କାଠର ବ୍ଲକ ଦିଆଯିବ । ସେମାନେ ସେଗୁଡ଼ିକ ସଜେଇବେ । ଏହା ଦ୍ୱାରା ସେମାନଙ୍କର ହାତ ମୁଣ୍ଡ କାମ କରିବ ଏବଂ ମସ୍ତିଷ୍କର ବିକାଶ ଘଟିବ । ଏହାଦ୍ୱାରା ସେମାନେ ବିଭିନ୍ନ ରଙ୍ଗ, ଆକାର ବିଷୟରେ ଧାରଣା ପାଇବେ ।

# ଇନ୍ଦ୍ରିୟ ଅନୁଭବ

ପିଲାମାନେ ସେମାନଙ୍କ ଇନ୍ଦ୍ରିୟ (କାନ, ନାକ, ପାଟି,ଜିଭ, ଆଖି) ଦ୍ୱାରା ଅନେକ କଥା ଶିଖିଥାନ୍ତି ଏବଂ ବିଭିନ୍ନ କାର୍ଯ୍ୟଦ୍ୱାରା ଏହି ଇନ୍ଦ୍ରିୟଗୁଡ଼ିକ ଅଧିକ ସକ୍ଷମ ହୁଏ ।

**ସ୍ପର୍ଶେନ୍ଦ୍ରିୟ ବା ଛୁଇଁବା :** ପ୍ରତ୍ୟେକ ଜିନିଷକୁ ଆମେ କିପରି ଜାଣୁ ? କଠିନ, କୋମଳ, ଥଣ୍ଡା, ଗରମ ଇତ୍ୟାଦି ଜିନିଷକୁ ଛୁଇଁ ଜାଣିପାରୁ । ପିଲାମାନଙ୍କୁ ବିଭିନ୍ନ ପ୍ରକାର ଜିନିଷ ରଖି ଆଖି ବୋଜି ଛୁଇଁବା ପାଇଁ କୁହାଯିବ ଏବଂ କେମିତି ଲାଗୁଛି ଏବଂ ଜିନିଷଟି କଣ ପଚରା ଯିବା ଉଚିତ ।

**ସ୍ୱାଦ :** ବିଭିନ୍ନ ଜିନିଷ କିପରି ଲାଗେ ? ବିଭିନ୍ନ ପ୍ରକାରର ଜିନିଷ ରଖା ଯାଇପାରେ । ମଞ୍ଜି, ଫଳ, ମୂଳ ଇତ୍ୟାଦି । ପିଲାମାନେ ତାକୁ ପାଟିରେ ପକାଇ ତାର ସ୍ୱାଦ ଜାଣିପାରିବେ - ଖଟା, ମିଠା, ଲୁଣିଆ ଇତ୍ୟଦି ।

**ଶ୍ରବଣେନ୍ଦ୍ରିୟ ବା ଶବ୍ଦ:** କେଉଁ ଜିନିଷରୁ କେଉଁ ପ୍ରକାରର ଶବ୍ଦ ବାହାରୁଛି । ପିଲାମାନେ ପେନ୍‌ସିଲ୍, ଡ ଷ୍ଟର, ପଥର, ଆଦି ଜିନିଷରୁ ଜାଣିପାରିବେ କେଉଁ ପ୍ରକାର ଶବ୍ଦ ଆସୁଛି । ନିଜ ଗାଁରେ, ପଶୁପକ୍ଷୀ, ଗାଡ଼ି ମଟର ଅଛି । କିଏ କିପରି ଶବ୍ଦ କରେ ସେମାନେ ନିଜେ ଅନୁଭବ କରିପାରିବେ ଏବଂ ସମ ଉଚ୍ଚାରଣ କରିପାରିବେ ।

**ଘ୍ରାଣେନ୍ଦ୍ରିୟ ବା ବାସନା:** ନିଜ ଗାଁରେ ମିଳୁଥିବା ବିଭିନ୍ନ ଫୁଲ, ପତ୍ର,ପନିପରିବା, ତୈଳପଦାର୍ଥ, ଜିନିଷପତ୍ର ଇତ୍ୟାଦିରୁ ପିଲାମାନେ ଜାଣିପାରିବେ କେଉଁ ଜିନିଷ କିପରି ବାସନା ହେଉଛି ।

**ଦୃଷ୍ଟିନ୍ଦ୍ରିୟ :** ଆଖିରେ ଦେଖି ଚିହ୍ନିପାରିବ, ଜାଣିପାରିବା ପଦାର୍ଥକୁ ଦୃଷ୍ଟି ଇନ୍ଦ୍ରିୟ କହିପାରିବା । ବିଭିନ୍ନ ପ୍ରକାର ପଦାର୍ଥ, ବସ୍ତୁ ଆଦିକୁ ପିଲାଙ୍କୁ ଦେଖାଇ, ସେଥିରୁ ନାମ, ବର୍ଣ୍ଣ,ରୂପ କହିବାକୁ ଶିକ୍ଷକ ପିଲାମାନଙ୍କୁ କହିବେ ।

□□□

*ସହାୟକ ପୁସ୍ତିକା:*

୧) Is It Tomorrow Yet ? : Elinor Schulman Kolumbus, Isreal
୨) Education Psychology & Methods of Teaching by Dr. Jagannath Mohanty
୨) Learning for Life : ରଞ୍ଜନ ଅମିନ୍ , ବୁକ୍‌ସ ଫର୍ ଚେଞ୍ଜ, ବାଙ୍ଗାଲୋର
୩) ଆମେ: ଆମ ପିଲା ଡଃ. ରାଧାନାଥ ରଥ ଅକ୍ଷର ପ୍ରକାଶନୀ, କଟକ
୪) ବିଜ୍ଞାନ କ'ଣ ? : ସୃଜନିକା, ଭୁବନେଶ୍ୱର
୫) ସବୁ ସମୟରେ ଶିଖିବା : ଜନ୍ ହୋଲ୍ଟ, ମାନବିକ, ଭୁବନେଶ୍ୱର
୬) ତରଙ୍ଗ : କିଥ୍ ୱାରେନ୍, ୟୁନିସେଫ୍ ।

□□□

## ଶିକ୍ଷକ/ଶିକ୍ଷିକା ମାନଙ୍କ ପାଇଁ କିଛି ଉପାଦେୟ ପୁସ୍ତକ

| ପୁସ୍ତକର ନାମ | ଲେଖକ | ପ୍ରକାଶକ |
|---|---|---|
| ୧) ଆମେ ଆମ ପିଲା | ଡ. ରାଧାନାଥ ରଥ | ଅକ୍ଷର, କଟକ |
| ୨) ଆମେ ଆମ ମନ | ଡ. ରାଧାନାଥ ରଥ | ,, |
| ୩) ଆଜିର ଶିଶୁ କାଲିର ମଣିଷ | ଡକ୍ଟର ଗୀତା ଦାସ | ,, |
| ୪) ଶିଶୁର ଯତ୍ନ ଓ ପ୍ରାକ୍-ବିଦ୍ୟାଳୟ ପରିଚାଳନା (୧ମ, ୨ୟ, ୩ୟ, ୪ର୍ଥ) | | ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର |
| ୫) ଅସୁସ୍ଥ ମନ | ଡ. ଜଗନ୍ନାଥ ପ୍ରସାଦ ଦାସ | ,, |
| ୬) ପିଲାଙ୍କୁ କିପରି ମଣିଷ କରିବା | ପ୍ରମୋଦ କୁମାର ମହାନ୍ତି | ଅଗ୍ରଦୂତ, କଟକ |
| ୭) ପିଲାକୁ କିପରି ଗଢ଼ିବା | ନବଜ୍ୟୋତି କାର୍ଯ୍ୟାଳୟ, | ପଣ୍ଡିଚେରୀ |
| ୮) ବିଦ୍ୟାଳୟରେ ମସ୍ତିଷ୍କ ନୁହେଁ, ହୃଦୟ | ଏ.ଏସ୍.ନୀଲ୍<br>ଚିତ୍ତରଞ୍ଜନ ଦାସ (ଅନୁବାଦ) | ଶିକ୍ଷାସନ୍ଧାନ, ଭୁବନେଶ୍ୱର |
| ୯) ମୋ ହୃଦୟ ପିଲାଙ୍କ ପାଇଁ | ଭାସିଲି ସୁଖୋମ୍ଲିନ୍ସ୍କି<br>ଚିତ୍ତରଞ୍ଜନ ଦାସ(ଅନୁବାଦ) | ,, |
| ୧୦) ଜଣେ ଶିକ୍ଷକଙ୍କୁ ଚିଠି | (ବାର୍ବିଆନା ସ୍କୁଲ ଦ୍ୱାରା ପ୍ରେରିତ)<br>ଚିତ୍ତରଞ୍ଜନ ଦାସ(ଅନୁବାଦ) | ,, |
| ୧୧) କ୍ରିଷ୍ଟେନ୍ କଲଲ୍ | ଚିତ୍ତରଞ୍ଜନ ଦାସ | ,, |
| ୧୨) ୟ୍ୟାସ୍‌ନାୟା ପୋଲ୍ୟାନା | ଲେଓ ଟଲ୍‌ଷ୍ଟୟ<br>ଚିତ୍ତରଞ୍ଜନ ଦାସ(ଅନୁବାଦ) | ,, |
| ୧୩) ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରୟୋଗ | ସଂକଳନ | ,, |
| ୧୪) ବିଦ୍ୟାଳୟକୁ ପତ୍ରମାଳା | ଜେ. କୃଷ୍ଣମୂର୍ତ୍ତୀ | ସେଲ୍‌ଫ ଏଡୁକେସନ୍ ଟ୍ରଷ୍ଟ, କଟକ |
| ୧୫) ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ | ଜେ. କୃଷ୍ଣମୂର୍ତ୍ତୀ | ,, |
| ୧୬) ଶିକ୍ଷା | ମହାତ୍ମାଗାନ୍ଧୀ | ଉତ୍କଳ ଗାନ୍ଧୀ ସ୍ମାରକୀ ନିଧି, କଟକ |
| ୧୭) ପିଲାଏ ଶିଖନ୍ତି କିପରି | ଜନ୍ ହୋଲ୍ଟ<br>ଅନୁବାଦ: ସୁମିତ୍ରା ଚୌଧୁରୀ | ଶିକ୍ଷାସନ୍ଧାନ |

| | | |
|---|---|---|
| ୧୮) ସବୁ ସମୟରେ ଶିଖିବା | ଜନ୍ ହୋଲ୍ଟ | |
| | ଅନୁବାଦ: ବିନୟକୃଷ୍ଣ ପଟ୍ଟନାୟକ | ମାନବିକ, ଫୁଲବାଣୀ |
| ୧୯) ଶିକ୍ଷକ | ସିଲ୍‌ଭିଆ ଆଷ୍ଟୋନର୍ | |
| | ଅନୁବାଦ : ବିନୟକୃଷ୍ଣ ପଟ୍ଟନାୟକ | ,, |
| ୨୦) ଜଣେ ଶିକ୍ଷକଙ୍କ କାହାଣୀ | ଡଃ.ମଦନ ମୋହନ ପ୍ରଧାନ | ସୁହୃଦ୍, ଭୁବନେଶ୍ୱର ୨୧ ) |
| ଶିକ୍ଷା ବିଚାର | ବିନୋବା - ଅନୁବାଦ୍ - ଅନପୂର୍ଣ୍ଣା ମହାରଣା | |
| ୨୨) ଶିକ୍ଷାରୁ ସଂକ୍ରମଣ | ଚିତ୍ତରଞ୍ଜନ ଦାସ | ଓଡ଼ିଶା ବୁକ୍ ଷ୍ଟୋର୍,କଟକ |
| ୨୩) ଦିବାସ୍ୱପ୍ନ | ଗିଜୁଭାଇ ବଧେକା | |
| | ଅନୁବାଦ: ପୁଷ୍ପଶ୍ରୀ ପଟ୍ଟନାୟକ | |
| | ନିଖିଳ ମୋହନ ପଟ୍ଟନାୟକ | ଏନ୍.ବି.ଟି |
| ୨୪) ତୋତ୍ତଚାନ୍ | ତେତ୍‌ସୁକୋ କୁରୋୟାନାଗି | |
| | ଅନୁବାଦ : ବିନୟକୃଷ୍ଣ ପଟ୍ଟନାୟକ<br>ଓ ନିଖିଳ ମୋହନ ପଟ୍ଟନାୟକ | ଏନ୍.ବି.ଟି |
| ୨୫) ଶିକ୍ଷାପ୍ରସଙ୍ଗ : ଶ୍ରୀମା | ଅନୁବାଦ-ଚିତ୍ତରଞ୍ଜନ ଦାସ | ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ |
| ୨୬) ଶିକ୍ଷା | ପଣ୍ଡିତ ଗୋପବନ୍ଧୁ ଦାସ | ଗୋପବନ୍ଧୁ ଭବନ, କଟକ |
| ୨୮) ଲେଖନୀର ପାଠଶାଳା | ରାମକୃଷ୍ଣ ନନ୍ଦ | ସଂସାର ପ୍ରେସ୍, କଟକ |
| ୨୯) ଜୀବନ ବିଦ୍ୟାଳୟ | ଚିତ୍ତରଞ୍ଜନ ଦାସ | ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ |
| ୩୦) ଜଙ୍ଗଲ ଚିଠି | ଚିତ୍ତରଞ୍ଜନ ଦାସ | ଅଗ୍ରଗାମୀ, କାଶୀପୁର |
| ୩୧) ଆମ ଭାଷା ବିଭବ | ପ୍ରଫେସର ଶତ୍ରୁଘ୍ନ ନାଥ | ପଥିକ ପ୍ରକାଶନୀ,ଭୁବନେଶ୍ୱର |
| ୩୨) ଶିକ୍ଷା ବିତର୍କ | ସଂକଳନ | ଅଗ୍ରଗାମୀ ଓ ଶିକ୍ଷାସନ୍ଧାନ |
| ୩୩) ଋଷିଆ ଚିଠି | ରବୀନ୍ଦ୍ରନାଥ ଟାଗୋର | |
| | ଅନୁବାଦ - ଚିତ୍ତରଞ୍ଜନ ଦାସ | କଟକ ପବ୍ଲିସିଂ ହାଉସ୍, କଟକ |
| ୩୪) ନୂତନ ଶିକ୍ଷାର ପଦ୍ଧତି | ଚିତ୍ତରଞ୍ଜନ ଦାସ | ସୁହୃଦ୍ ପ୍ରକାଶନୀ, ଭୁବନେଶ୍ୱର |

## ଉପାଦେୟ ପତ୍ରିକା

ଶିଖା (ଦ୍ୱିମାସିକ ) ପ୍ରକାଶକ : ଶିକ୍ଷାସନ୍ଧାନ, ଭୁବନେଶ୍ୱର

ଶିକ୍ଷାସମ୍ବାଦ (ତ୍ରୟମାସିକ) ପ୍ରକାଶକ: ଶିକ୍ଷାସନ୍ଧାନ, ଭୁବନେଶ୍ୱର

ତରଙ୍ଗ (ଦ୍ୱିମାସିକ) ସୃଜନିକା, ଢାଗମରା, ଖଣ୍ଡଗିରି, ଭୁବନେଶ୍ୱର

ପରଖ (ଦ୍ୱିମାସିକ) ମାନବିକ, ମାଷ୍ଟରପଡ଼ା, ଫୁଲବାଣୀ

## ପିଲାଙ୍କ ପାଇଁ କେତେକ ପୁସ୍ତକ

| | | |
|---|---|---|
| କିଚିରି ମିଚିରି ଗୀତ | ଦାଶ ବେନ୍ହୁର | ନବପଲ୍ଲବ, ଭୁବନେଶ୍ୱର |
| ବିଜ୍ଞାନ ପହଲି | ଦାଶ ବେନ୍ହୁର | ସୃଜନିକା, ଭୁବନେଶ୍ୱର |
| ପୃଥିବୀର ପିଲାଦିନେ | ଚିତ୍ତରଞ୍ଜନ ଦାସ | ଅଗ୍ରଗାମୀ, କାଶୀପୁର |
| ସାଗର ପଥେ | ଚିତ୍ତରଞ୍ଜନ ଦାସ | ଶିକ୍ଷାସନ୍ଧାନ, ଭୁବନେଶ୍ୱର |
| ଅନାବନା ଗପ | ଦାଶ ବେନ୍ହୁର | ଅଗ୍ରଗାମୀ, କାଶୀପୁର |
| ରାଜକୁମାର | ଚିତ୍ତରଞ୍ଜନ ଦାସ | ବିଦ୍ୟାପୁରୀ, କଟକ |
| ଗୋଣ୍ଡ ଲୋକକଥା | ଡ. ମହେନ୍ଦ୍ର ମିଶ୍ର | ଶିକ୍ଷାସନ୍ଧାନ, ଭୁବନେଶ୍ୱର |
| କଳାହାଣ୍ଡିର ବୀରଗାଥା | ଡ. ମହେନ୍ଦ୍ର ମିଶ୍ର | ,, |
| ମେଘ ଗରଜଇ ଘଡ଼ର ଘୁମୁ | ଦାଶ ବେନ୍ହୁର | ଅଗ୍ରଗାମୀ, କାଶୀପୁର |
| ପଦ ଭଉଁରୀ | ଦାଶ ବେନ୍ହୁର | ,, |
| ମନ ମୋଟୁ ମଇତା | ଦାଶ ବେନ୍ହୁର | ନବପଲ୍ଲବ, ଭୁବନେଶ୍ୱର |
| ଏଶପ୍ କାହାଣୀ | ଚିତ୍ତରଞ୍ଜନ ଦାସ | ବିଦ୍ୟାପୁରୀ |
| ସେକ୍ସପିୟର କାହାଣୀମାଳା | ଚିତ୍ତରଞ୍ଜନ ଦାସ | ଅଗ୍ରଦୂତ, କଟକ |
| ମାର୍କୋପୋଲ | ଚିତ୍ତରଞ୍ଜନ ଦାସ | ବିଦ୍ୟାପୁରୀ, କଟକ |
| କେତେ ଦେଶର କଥା | ଚିତ୍ତରଞ୍ଜନ ଦାସ | ପ୍ରଜ୍ଞାଲୋକ, ପୁରୀ |
| ସୁନ୍ଦରଦେଶ ଫିନ୍‌ଲାଣ୍ଡ | ଚିତ୍ତରଞ୍ଜନ ଦାସ | ,, |
| ଆଉଜଣେ ଏକଲବ୍ୟ ଓ ଅନ୍ୟାନ୍ୟ କାହାଣୀ | ପ୍ରବୀଣା ମହାନ୍ତି | ଶିକ୍ଷାସନ୍ଧାନ, ଭୁବନେଶ୍ୱର |
| ଆନର୍ସନ୍‌ଙ୍କ ଗପ | ଚିତ୍ତରଞ୍ଜନ ଦାସ | ଏସ୍.ବି.ପବ୍ଲିକେସନ୍, କଟକ |

❑❑❑

# ଶିକ୍ଷାସନ୍ଧାନ ସମ୍ବନ୍ଧରେ ପଦେ....

'ଶିକ୍ଷାସନ୍ଧାନ' ଶିକ୍ଷା କ୍ଷେତ୍ରରେ ଆନ୍ଦୋଳନ ପାଇଁ ଏକ ଅଙ୍ଗୀକାରବଦ୍ଧ ଅନୁଷ୍ଠାନ। ଶିକ୍ଷାକୁ ଆନ୍ତରିକ ଭାବରେ ଭଲ ପାଉଥିବା, ଶିକ୍ଷା ସହିତ ପ୍ରତ୍ୟକ୍ଷଭାବେ ସଂଶ୍ଳିଷ୍ଟ ହୋଇଥିବା, ଶିକ୍ଷାକୁ ଏକ ସଂଘର୍ଷର ମାଧ୍ୟମ ରୂପେ ବାଛି ନେଇଥିବା, କେତେଜଣ ଉତ୍ସାହୀ ଶିକ୍ଷାପ୍ରେମୀମାନଙ୍କୁ ନେଇ 'ଶିକ୍ଷାସନ୍ଧାନ'ର ଉତ୍ପତ୍ତି। ଶିକ୍ଷାରୁ ବଞ୍ଚିତ ହେଉଥିବା ଅଗଣିତ ଜନସମୂହଙ୍କ ନିକଟରେ ପ୍ରକୃତ ଶିକ୍ଷାକୁ ପହଞ୍ଚାଇବା ପାଇଁ 'ଶିକ୍ଷାସନ୍ଧାନ' ପ୍ରତିଶୃତିବଦ୍ଧ। ସାମ୍ପ୍ରତିକ ଶିକ୍ଷା ବ୍ୟବସ୍ଥା ସମ୍ବନ୍ଧରେ ଜନସଚେତନତା ଆଣି ସେମାନଙ୍କ ମଧ୍ୟରେ ଶିକ୍ଷା ପଦ୍ଧତିରେ ରହିଥିବା ଅସଙ୍ଗତିକୁ ବୁଝାଇ ତା'ର ସମାଧାନ କରାଇବା, ଆଦିବାସୀ ଅଞ୍ଚଳରେ ଜୀବନ ଉପଯୋଗିତା, ଶିକ୍ଷାର ଅଭିବୃଦ୍ଧି କରିବା, ଜନସାଧାରଣ ଓ 'ଶିକ୍ଷାସନ୍ଧାନ' ମଧ୍ୟରେ ବ୍ୟକ୍ତିଗତ ଆଲୋଚନା ଓ ସମ୍ପର୍କ ପ୍ରତିଷ୍ଠା କରିବା ସହିତ ଶିକ୍ଷକ ତାଲିମ୍, ଶିକ୍ଷକ କର୍ମଶାଳା, ଲେଖକ କର୍ମଶାଳା, ଶିକ୍ଷାର ବିକାଶ ପାଇଁ ବିଭିନ୍ନ କର୍ମଶାଳା, ତର୍କ, ଆଲୋଚନା ଚକ୍ର ଏବଂ ଏହା ବ୍ୟତୀତ ଦଲିଲ କରଣ, ପୁସ୍ତକ ପ୍ରକାଶନ ଓ ବିତରଣ ଆଦି କାର୍ଯ୍ୟକ୍ରମ ସମ୍ପାଦିତ କରାଯାଉଅଛି। ପ୍ରକୃତ ଶିକ୍ଷା, ମଣିଷ ସମାଜରେ ରହିଥିବା କଳଙ୍କି ଗୁଡ଼ିକୁ ଛଡ଼ାଇ ନୂଆ ଚିନ୍ତାର ଖୋରାକ ଯୋଗାଇ ଦେଉଥାଏ। ପରସ୍ତ ପରସ୍ତ ହୋଇ ରହିଥିବା ଅଳନ୍ଧୁଗୁଡ଼ିକୁ ପରିଷ୍କାର କରିଥାଏ। ନୂଆ ଜୀବନ, ନୂଆ ଆଲୋକର ଆହ୍ୱାନ ଆଣିଦିଏ। ଏହି ଆଭିମୁଖ୍ୟକୁ ନେଇ ଶିକ୍ଷାସନ୍ଧାନ ତାର ଗତିପଥରେ ଆଗେଇ ଚାଲିଛି।

ସାଃ ବିଦ୍ୟା ଯା ବିମୁକ୍ତୟେ।

**ଶିକ୍ଷା ସନ୍ଧାନ**
ଭୁବନେଶ୍ୱର